# ଆମର ଅନିଷ୍ଟକାରୀ କୀଟପତଙ୍ଗ



ଶ୍ରୀ ରବିନାରାୟଣ ପଣ୍ଡା

# ଆମର ଅନିଷ୍ଟକାରୀ କୀଟ ପତଙ୍ଗ

ରବି ନାରାୟଣ ପଣ୍ଡା

ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ

ବିନୋଦ ବିହାରୀ, କଟକ - ୨

ଆମର ଅନିଷ୍ଟକାରୀ କୀଟପତଙ୍ଗ

ଲେଖକ : *ଶ୍ରୀ ରବିନାରାୟଣ ପଣ୍ଡା*

ପ୍ରଜାତନ୍ତ୍ର, ବିହାରୀବାଗ

କଟକ - ୭୫୩୦୦୨

ପ୍ରକାଶକ : ଶ୍ରୀ ଗଙ୍ଗାଧର ତ୍ରିପାଠୀ

ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ

ବିନୋଦ ବିହାରୀ, କଟକ - ୨

ଲେଜର ଟାଇପ୍ ସେଟିଙ୍ଗ୍ :

ନ୍ୟାସନାଲ୍ କମ୍ପ୍ୟୁଟର୍ସ, କଟକ-୧୦

ମୂଲ୍ୟ : ଟ ୧୫.୦୦

**AMARA ANISTAKARI KITAPATANGA**

Written by - ***Rabinarayan Panda***

The Prajatantra

Cuttack - 753002

Published by : **Sri Gangadhar Tripathy**

Prachi Sahitya Pratisthan

Binod Bihari, Cuttack-2

Lazer Type Setting :

**National Computers**, Ctc-10

Price : Rs. 15.00

**ବହି ବିଷୟରେ ପଦେ..........**

ଆମର ସବୁଜ ପୃଥିବୀରେ ମଣିଷମାନେ ବାସ କରିବା ସଙ୍ଗେ ସଙ୍ଗେ ଅନେକ କୀଟ-ପତଙ୍ଗ ମଧ୍ୟ ବାସ କରିଥାନ୍ତି । ଏହି କୀଟପତଙ୍ଗ ମାନଙ୍କର ଚାଲିଚଳଣୀ ଅଦ୍ଭୁତ ଧରଣର । ଅନେକ ଗୁଡିଏ କୀଟପତଙ୍ଗ ମନୁଷ୍ୟର ଉପକାର କରୁଥିଲା ବେଳେ, ଅନେକ କୀଟପତଙ୍ଗ ଅପକାର କରିଥାନ୍ତି । ମଣିଷର ଶତ୍ରୁପରି ପଛେ ପଛେ ଲାଗିଥାନ୍ତି । ସେମାନଙ୍କ ମଧ୍ୟରୁ ମାଛି, ମଶା, ଅସରପା, ଛାରପୋକ, ପିମ୍ପୁଡି, କଙ୍କଡାବିଛା, ବୁଢୀଆଣୀ, ଉଈ ଓ ଝିଣ୍ଟିକା ପ୍ରଭୃତି ଅନ୍ୟତମ ।

ଏହି ଅପକାରୀ କୀଟପତଙ୍ଗ ମାନଙ୍କର ବିଷୟରେ ଜାଣିପାରିଲେ ସେମାନଙ୍କ ପ୍ରତି ସତର୍କ ରହିବାରେ ଅସୁବିଧା ହେବନାହିଁ ।

ଏଣୁ 'ଆମର ଅନିଷ୍ଟକାରୀ କୀଟପତଙ୍ଗ' ପୁସ୍ତକର ସୃଷ୍ଟି । ଏହି ପୁସ୍ତକଟି ସୁକୋମଳମତି ବାଳକ ବାଳିକାଙ୍କ ହିତରେ ଆସିଲେ ନିଜକୁ ଧନ୍ୟ ମନେକରିବି ।

ଲେଖକ

# ସୂଚୀ-ପତ୍ର

# ମାଛି (FLY)

ମାଛି ମନୁଷ୍ୟର ଏକ କ୍ଷତିକାରକ ପତଙ୍ଗ । ସଂକ୍ରାମକ ରୋଗ ଜୀବାଣୁ ମାନଙ୍କର ସେ ବାହକ । ମାଛି ସାଧାରଣତଃ ଜନ ବସତିରେ ରହିଥାନ୍ତି । ଜନବସତିରେ ରହି ବିଭିନ୍ନ ପ୍ରକାର ଖାଦ୍ୟ ଦ୍ରବ୍ୟଠାରୁ ଆରମ୍ଭ କରି ଛେପ, ଖଙ୍କାର ଓ ମଇଳା ପ୍ରଭୃତି ଅସନା ଜିନିଷରୁ ଖାଦ୍ୟ ସଂଗ୍ରହ କରିଥାନ୍ତି । ରୋଗୀ ମାନଙ୍କର ଛେପ, ଖଙ୍କାର ଓ ମଇଳାରେ ବସିବା ପରେ ଏମାନେ ଉଡିଆସି ଆମ ଖାଦ୍ୟ ଉପରେ ବସିଥାନ୍ତି । ରୋଗୀର ଛେପ, ଖଙ୍କାର, ମଳ ଓ ମୂତ୍ର ପ୍ରଭୃତିରେ ବସିଲା ବେଳେ ଏମାନଙ୍କ ଗୋଡ, ଶୁଣ୍ଢ ଓ ପକ୍ଷରେ ରୋଗ ଜୀବାଣୁ ଆସି ଖାଦ୍ୟ ପଦାର୍ଥ ମାଧ୍ୟମରେ ଲୋକଙ୍କ ଶରୀର ଭିତରକୁ ପ୍ରବେଶ କରନ୍ତି ।



(ମାଛି)

ଫଳରେ ସୁସ୍ଥଲୋକ ଅସୁସ୍ଥ ହୋଇଯାଏ, ଠିକ୍‌ଭାବରେ ଔଷଧପତ୍ର ବ୍ୟବହାର ନ କଲେ କିମ୍ବା ପ୍ରତିଶେଧକ ବ୍ୟବସ୍ଥା ଗ୍ରହଣ ନକଲେ ମୃତ୍ୟୁ ମୁଖରେ ପଡିଥାଏ ।

ପୃଥିବୀରେ ବିଭିନ୍ନ ଶ୍ରେଣୀର ମାଛି ଅଛନ୍ତି । ସେମାନଙ୍କ ମଧ୍ୟରେ ଆମଘର ମାନଙ୍କରେ ଦେଖାଯାଉଥିବା ମାଛି ସାଧାରଣତଃ ଆମର ଅନିଷ୍ଟକାରୀ । ଏମାନଙ୍କ ଶରୀରକୁ ମୁଣ୍ଡ, ବକ୍ଷ ଓ ଉଦର ଏହିପରି ତିନିଭାଗରେ ବିଭକ୍ତ କରାଯାଇଛି । ମୁଣ୍ଡର ସମ୍ମୁଖ ଭାଗରେ ପାଟି ଅଛି । ପାଖରେ ଗୋଟିଏ ମୁନିଆ ଓ ସରୁ ନଳୀର ଶୁଣ୍ଢ ରହିଛି । ଏହା ସାହାଯ୍ୟରେ ମାଛି ରକ୍ତ ଶୋଷିଥାଏ । ଏହି ଜାତିର ମାଛି ସାଧାରଣତଃ ଗୋରୁଗାଈ ଓ ଅନ୍ୟାନ୍ୟ ଜୀବଜନ୍ତୁ ମାନଙ୍କ ଦେହରୁ ରକ୍ତ ପିଇଥାନ୍ତି । ଏହି ଜାତିର ମାଛିକୁ ବାଦ୍ ଦେଲେ ଅନ୍ୟ କେତେକ ମାଛି ଅଛନ୍ତି ଯେଉଁମାନଙ୍କର ପାଟିର ଗଠନ କେବଳ ଚାଟିବା ଓ ଶୋଷିବା ପାଇଁ ଉପଯୁକ୍ତ ।




(ମାଛିର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ)

ଆମ ଘର ମାନଙ୍କରେ ସାଧାରଣତଃ ଏହି ପ୍ରକାରର ମାଛି ଦେଖାଯାଇଥାନ୍ତି ଏବଂ ସେମାନଙ୍କର ଏହି ପ୍ରକାରର ପାଟିଥାଏ । ମାଛିର ମୁଣ୍ଡର ଉପରି ଭାଗରେ ଦୁଇଟି ବଡ ଏବଂ ଗୋଲ ଗୋଲ ଆଖି ଅଛି । ମୁଣ୍ଡ ଓ ଉଦର ମଧ ଭାଗରେ ବକ୍ଷ ରହିଛି । ବକ୍ଷର ଦୁଇ ପାଖରେ ଦୁଇଟି ଶକ୍ତିଶାଳୀ କାର୍ଯ୍ୟକ୍ଷମ ପକ୍ଷ ଏବଂ ଦୁଇଟି ପାର୍ଶ୍ୱପକ୍ଷ ବାହାରିଥାଏ । କାର୍ଯ୍ୟକ୍ଷମ ପକ୍ଷ ସାହାଯ୍ୟରେ ମାଛି ଖୁବ୍ ଯୋର୍‌ରେ ଉଡିପାରେ । ପାର୍ଶ୍ୱପକ୍ଷ ମାଛି ଉଡିଲା

ବେଳେ ଭାରସାମ୍ୟ ରକ୍ଷା କରିଥାଏ । ମାଛିର ମୋଟ ଛ'ଟି ଲୋମଯୁକ୍ତ ଗୋଡ ଏହି ବକ୍ଷରୁ ବାହାରିଥାଏ । ବକ୍ଷର ପଛ ପାଖରେ ଉଦର ଥାଏ । ମାଛିର ଦେହ ସାରା ଛୋଟ ଛୋଟ ଲୋମରେ ପରିପୂର୍ଣ୍ଣ ଥାଏ । ମାଛିର ଦେହ ଅତି କୋମଳ । ଅତିବେଶୀରେ ଏକ ସେଣ୍ଟିମିଟର ପର୍ଯ୍ୟନ୍ତ ଏହି ମାଛିମାନେ ଲମ୍ବାରେ ବଢିଥାନ୍ତି ।




(ମାଛିର ଜୀବନ ଚକ୍ର)

ମାଛିମାନେ ଚାରୋଟି ସ୍ତରରେ ସେମାନଙ୍କର ବଂଶବୃଦ୍ଧି କରିଥାନ୍ତି । ଯଥା- ଅଣ୍ଡା, ଲାର୍ଭା, ପ୍ୟୁପା ଓ ପୂର୍ଣ୍ଣାଙ୍ଗ ଅବସ୍ଥା । ଏହି ପୂର୍ଣ୍ଣାଙ୍ଗ ଅବସ୍ଥାରେ ସ୍ତ୍ରୀ ମାଛିମାନେ ଅଣ୍ଡା ଦେଇଥାନ୍ତି । ଅପରିଷ୍କାର ପାଣି ଓ ଗୁହାଳ ଘରର ମୂତ ନଳା ପ୍ରଭୃତିରେ ସାଧାରଣତଃ ଏମାନେ ଅଣ୍ଡା ଦେଇଥାନ୍ତି । ସ୍ତ୍ରୀ ମାଛି ତାର ଜୀବନ କାଳ ମଧ୍ୟରେ ପ୍ରାୟ ୬୦୦ରୁ ୯୦୦ ସଂଖ୍ୟାରେ ଅଣ୍ଡା ଦେଇଥାଏ । ଥରେକେ ପ୍ରାୟ ୧୦୦ରୁ ୧୬୦ ସଂଖ୍ୟାର ଅଣ୍ଡା ଦେଇଥାଏ । ଉପଯୁକ୍ତ ଉତ୍ତାପ ଓ ଅନୁକୂଳ ପାରିପାର୍ଶ୍ୱିକ ଅବସ୍ଥା ପାଇଲେ ମାତ୍ର ଦିନେ ଦୁଇଦିନ ମଧ୍ୟରେ ଅଣ୍ଡା

ଗୁଡିକ ଲାର୍ଭାରେ ପରିଣତ ହୋଇଥାଏ । ଲାର୍ଭା ଗୁଡିକ ପ୍ରାୟ ୭ ରୁ ୮ ଦିନ ମଧ୍ୟରେ ପ୍ୟୁପା ସ୍ତର ଦେଇ ପୂର୍ଣ୍ଣାଙ୍ଗ ମାଛିରେ ପରିଣତ ହୋଇଥାନ୍ତି । ଗ୍ରୀଷ୍ମ ମଣ୍ଡଳୀୟ ଜଳବାୟୁରେ ମାଛିମାନଙ୍କର ଜୀବନ କାଳ ମାତ୍ର ଏକମାସ । ସାଧାରଣତଃ ବର୍ଷାଦିନେ ଅର୍ଥାତ୍ ଆଷାଢ଼ ଓ ଶ୍ରାବଣ ମାସରେ ମାଛିମାନେ ସେମାନଙ୍କ ବଂଶ ବୃଦ୍ଧି କରିଥାନ୍ତି । ଆମଦେଶରେ ଏହି ସମୟ ମାଛି ମାନଙ୍କ ବଂଶ ବୃଦ୍ଧି ପାଇଁ ପୁରାପୁରି ଅନୁକୂଳ ସମୟ । ତେଣୁ ଏହି ସମୟରେ ଅଧିକ ସଂଖ୍ୟାରେ ମାଛି ଦେଖାଯାନ୍ତି ।

ମାଛିମାନଙ୍କର ବଂଶ ବୃଦ୍ଧି ଘଟିଲେ, ହଇଜା ତରଳ ଝାଡା, ଆନ୍ତ୍ରୀକ ଜ୍ୱର, ଆମାଶୟ ପ୍ରଭୃତି ବହୁ ମାରାତ୍ମକ ସଂକ୍ରାମକ ରୋଗ ହୋଇଥାଏ । ଏମାନଙ୍କ ବଂଶକୁ ସମୂଳେ ଧ୍ୱଂସ କରିବା ଦରକାର । ଘରର ପାଣିନଳା, ମୂତ ନଳା ଓ ଗୋରୁ ଗୁହାଳ ପ୍ରଭୃତି ବଂଶବୃଦ୍ଧି କରୁଥିବା ଜାଗାରେ ଡି. ଡି.ଟି ସ୍ପ୍ରେ କରିବା ଦରକାର । ମାଛିକୁ ଘଉଡାଇ ଖାଦ୍ୟ ଖାଇବା ଦରକାର । ଖାଦ୍ୟ ପଦାର୍ଥକୁ ଘୋଡେଇ ରଖିଲେ ମାଛିମାନେ ରୋଗ ଜୀବାଣୁ ଛାଡି ପାରନ୍ତି ନାହିଁ । 'ପ୍ୟାରିଥ୍ରୁମ' ନାମକ ରାସାୟନିକ ଔଷଧ ପକାଇଲେ ମାଛି ତାକୁ ଖାଇ ମରି ଯାଇଥାନ୍ତି ।



# ମଶା (MOSQUITO)

କୀଟପତଙ୍ଗ ମାନଙ୍କ ମଧ୍ୟରେ ମଶା ସବୁଠାରୁ ଅବାଞ୍ଛିତ ଓ ମାରାତ୍ମକ ପତଙ୍ଗ । ଏମାନେ ଲୁଚିଛପି ଖୁବ୍ ଚାଳକତରକରେ ଆମ ଦେହରୁ ରକ୍ତ ଶୋଷି ନେଇଥାନ୍ତି । ସନ୍ଧ୍ୟା ହେଲେ ଏମାନେ ସେମାନଙ୍କ ବସାରୁ ବାହାରିଥାନ୍ତି । ରାତିସାରା ରକ୍ତ ଶୋଷିବାରେ ଲାଗି ଯାନ୍ତି । ପ୍ରାୟ ୧୫ ରୁ ୨୦ ମିନିଟ୍ ମଧ୍ୟରେ ରକ୍ତରେ ସେମାନଙ୍କ ପେଟ ପୁରାଇଥାନ୍ତି । ମଶାମାନେ କେବଳ ଯେ ମନୁଷ୍ୟ ରକ୍ତ ପିଅନ୍ତି ତାହା ନୁହେଁ ଅନ୍ୟ ପଶୁ ମାନଙ୍କଠାରୁ ମଧ୍ୟ ରକ୍ତ ଶୋଷି ଥାନ୍ତି । ରକ୍ତ ଶୋଷିବା ସମୟରେ ଏମାନେ ରୋଗୀ ମାନଙ୍କଠାରୁ ଶୋଷିଥିବା ରକ୍ତକୁ ଆମ ଦେହରେ ଛାଡି ଦେଇଥାନ୍ତି । ଆମ ସୁସ୍ଥ ଶରୀରରେ ରୋଗ ଜୀବାଣୁ ପ୍ରବେଶ କରନ୍ତି । ଫଳରେ ଆମେ ''ମ୍ୟାଲେରିଆ'', ''ଫିଲେରିଆ'', ଡେଙ୍ଗିସ୍ ଓ ହୃଦରୋଗ ପ୍ରଭୃତି ନାନା ପ୍ରକାର ରୋଗରେ ପୀଡିତ ହୋଇଥାଉ ।



(ମଶା)

ମଶାମାନେ ସାଧାରଣତଃ ଅନ୍ଧାରିଆ ଅପରିଷ୍କାର ପାଣି, ସନ୍ତସନ୍ତିଆ ଜାଗା, ନାଳ ନର୍ଦ୍ଦମା ଓ ଅଳିଆଗଦା ପ୍ରଭୃତି ସ୍ଥାନରେ ବାସ କରିଥାନ୍ତି ।

ପୃଥିବୀର ସବୁଦେଶରେ ମଶା ଅଛନ୍ତି । ସାରା ପୃଥିବୀର ମଶାମାନଙ୍କର ଶରୀରର ଗଠନ ଆକାର ଓ ଜୀବନ ଧାରଣ ପ୍ରଣାଳୀ ଅନୁସାରେ ମୋଟ ଦୁଇହଜାର ଛଅଶହରୁଊର୍ଦ୍ଧ୍ୱ ଜାତିର ମଶା ଦେଖା ଯାଇଥାନ୍ତି । ସାଧାରଣତଃ ମଶାମାନେ 'କୁଲିସିଡାଇ' ଓ 'ଅର୍ଡର ଡିପ୍‌ଟେରା' ଏହିପରି ଦୁଇ ପରିବାର ଅନ୍ତର୍ଭୁକ୍ତ କରାଯାଇଛି ।

ସବୁଜାତିର ମଶା ରକ୍ତ ଶୋଷି ନଥାନ୍ତି । କିନ୍ତୁ ସବୁଜାତିର ମଶା ଫଳରସ କଟା ପନିପରିବା ପ୍ରଭୃତିରୁ ରସ ସଂଗ୍ରହ କରି ଉଦର ପୂରାଇ ଥାନ୍ତି । କେତେକ ନିର୍ଦ୍ଦିଷ୍ଟ ଜାତିର ମଶାକୁ ବାଦ ଦେଲେ ଅନ୍ୟ କେତେକ ଜାତିର ମଶା ଆମର ଅନିଷ୍ଟ କରନ୍ତି ନାହିଁ ।

ଗ୍ରେଟ୍‌ବ୍ରିଟେନରେ ମୋଟ ୩୧ ପ୍ରକାର ମଶା ଦେଖାଯାଇଥାନ୍ତି । ଆମଦେଶରେ ପ୍ରାୟ ସେହି ଜାତୀୟ ମଶା ମଧ୍ୟ ଅଛନ୍ତି । ବୈଜ୍ଞାନିକମାନେ ପରୀକ୍ଷାକରି ସେମାନଙ୍କୁ 'କୁଲିସିନ୍' ଓ 'ଆନୋଫେଲିସ୍' ବୋଲି ନାମ ଦେଇଛନ୍ତି । ଏଇ ଆନୋଫେଲିସ ଜାତିର ମଶା ଆମର ବହୁତ କ୍ଷତି ଘଟାଇଥାନ୍ତି । ବିଶେଷ କରି ''ମାଇ ଏନୋ ଫେଲିସ୍'' ମଶା କାମୁଡିଲେ ମ୍ୟାଲେରିଆ ରୋଗ ହୋଇଥାଏ ।

ମଶାମାନଙ୍କ ମଧ୍ୟରେ ପ୍ରାୟ ଅଧିକାଂଶ ଶ୍ରେଣୀର ମାଈ ମଶାମାନଙ୍କର ଶୁଣ୍ଢଟି ପୁରୁଷ ମଶାମାନଙ୍କ ଅପେକ୍ଷା ଯଥେଷ୍ଟ ବଡ ଥାଏ । ମାଈ ମଶାମାନେ ରକ୍ତ ଶୋଷିଥାନ୍ତି । ଅଧିକ ବୃଦ୍ଧି ଅଧିକ ଅଣ୍ଡା ଦେବାପାଇଁ ମାଈ ମଶାମାନେ ରକ୍ତ ପିଇଥାନ୍ତି । ପୁରୁଷମଶାମାନେ ଫଳରସ, ପନିପରିବା ରସ ଖାଇ ଜୀବନଧାରଣ କରିଥାନ୍ତି । ଏମାନେ ଦେଖିବାକୁ ମାଈ ମଶାମାନଙ୍କ ତୁଳନାରେ ଛୋଟ ଓ ପତଳା ମଧ୍ୟ । ଉଭୟ ପୁରୁଷ ଓ ସ୍ତ୍ରୀ ମଶାମାନଙ୍କର ଦୁଇଟି ଲେଖାଁଏ ଖୁବ୍ ଶକ୍ତିଶାଳୀ ପକ୍ଷ, ୬ଟି ଲମ୍ବା ଗୋଡ ଥାଏ । ପେଟତଳେ ଦୁଇଟି କଣା ରହିଛି, ଏହା ସାହାଯ୍ୟରେ ନିଃଶ୍ୱାସ ପ୍ରଶ୍ୱାସ କାର୍ଯ୍ୟ ହୋଇଥାଏ । ମାଈମଶା ମୁଣ୍ଡରେ ମୋଟ ୬ଟି ପୋଲା ମୁନିଆ ଶୁଣ୍ଢ ଥାଏ । ସେଥିରୁ ୨ଟି ଶୁଣ୍ଢ ଦ୍ୱାରା ରକ୍ତ ଶୋଷିବା ଓ ଦୂଷିତ ରକ୍ତ ଛାଡିବା କାର୍ଯ୍ୟ ଏକ ସମୟରେ କରିଥାଏ । ଉପର ପାଖ ଶୁଣ୍ଢରେ ରକ୍ତ ଶୋଷିଥାଏ । ତଳପଟ ଶୁଣ୍ଢରେ ରୋଗ ଜୀବାଣୁ ଥିବା ରକ୍ତ ଛାଡିଥାଏ ।

ମଶା ବଂଶବୃଦ୍ଧି କରିବା ଦିଗରେ ମାଈ ମଶାମାନଙ୍କର ଭୂମିକା ପୁରୁଷମାନଙ୍କ ତୁଳନାରେ ଅଧିକ । ଭିନ୍ନ ଭିନ୍ନ ଜାଗାରେ ବିଭିନ୍ନ ଶ୍ରେଣୀର ମଶା ଅଣ୍ଡା ଦେଇଥାନ୍ତି । ମୁଖ୍ୟତଃ ଅପରିଷ୍କାର ଜଳ, ନାଳ ନର୍ଦ୍ଦମା, ଅଳିଆଗଦା, ଗଛ କୋରଡରେ ମାଈ ମଶାମାନେ ଅଣ୍ଡା ଦେଇଥାନ୍ତି । ମୋଟ ଚାରିଟି ସ୍ତରରେ ମଶା ପୂର୍ଣ୍ଣାଙ୍ଗ ଅବସ୍ଥାରେ ପହଞ୍ଚିଥାନ୍ତି । ଅଣ୍ଡା ହେଉଛି ପ୍ରଥମ ସ୍ତର, ଦ୍ୱିତୀୟ ସ୍ତରରେ ଲାର୍ଭା, ତୃତୀୟ ସ୍ତରରେ ଲାର୍ଭାରୁ ପ୍ୟୁପା ଓ ପ୍ୟୁପାରୁ ୪ର୍ଥ ସ୍ତରରେ ପୂର୍ଣ୍ଣାଙ୍ଗ ମଶାରେ ପରିଣତ ହୋଇଥାନ୍ତି । ଅତି ଆଶ୍ଚର୍ଯ୍ୟର କଥା ଯେ, ଲାର୍ଭା ଦୂଷିତ ଜଳରେ ୩ ରୁ ୫ ବର୍ଷ ପର୍ଯ୍ୟନ୍ତ ଅକ୍ଷତ ଅବସ୍ଥାରେ ଭାସି ଭାସି ରହିଥାଏ ।

ମଶା ମାନଙ୍କ ଦାଉରୁ ରକ୍ଷା ପାଇବା ପାଇଁ ଆମେ ସମସ୍ତେ ସଚେତନ ହେବା ଉଚିତ୍ । ସେମାନଙ୍କୁ ସମୂଳେ ବିନାଶ କରିବା ଦରକାର । ଏଥିପାଇଁ ଅପରିଷ୍କାର ନାଳ ନର୍ଦ୍ଦମାରେ କିରୋସିନ୍, ଫିନାଇଲ୍ ପରି କେତେକ ରାସାୟନିକ ତେଲ ପକାଇବା ଦରକାର । ଶୋଇବା ବା ରହିବା ଘର ଚାରିପାଖରେଥିବା ଅଳିଆ ସଫା କରିବା ସହିତ ଘାସ କୁଟା ସଫା କରିବା ଦରକାର । ଘରର କାନ୍ଥ, ବାଡ ଓ ଚାଳରେ ଡି.ଡି.ଟି ସ୍ପ୍ରେ କରିବା ନିତ୍ୟାନ୍ତ ଆବଶ୍ୟକ । ପାନୀୟ ଜଳ ବା ଅନ୍ୟ ରୂପରେ ବ୍ୟବହୃତ ହେଉଥିବା ପୋଖରୀ ଓ ଗାଡିଆରେ କଇଁଛ ଓ ମାଛ ଛାଡିଲେ ମଶା ମାନଙ୍କର ଲାର୍ଭାକୁ ଏମାନେ ଖାଇଯିବା ଦ୍ୱାରା ମଶାମାନଙ୍କର ବଂଶ ବୃଦ୍ଧି ହୋଇପାରେ ନାହିଁ । ଏହିପରି ଅନେକ ପଦକ୍ଷେପ ନିଆଗଲେ ମଶାଠାରୁ ଆମେ ନିଜକୁ, ଆମ ପରିବାରକୁ ଓ ଆମ ପଡୋଶୀକୁ ମୃତ୍ୟୁ ମୁଖରୁ ବଞ୍ଚାଇ ପାରିବା ।



# ଅସରପା (COCKROACH)

ଅସରପା ଆମ ଦେଶର ସବୁ ଜାଗାରେ ବାସ କରିଥାନ୍ତି । ସମସ୍ତେ ଅସରପା ଦେଖିଛନ୍ତି କିନ୍ତୁ ଅନେକ ଏହା ବିଷୟରେ ପରିଚିତ ହୋଇ ନଥାନ୍ତି । ଯଦିଓ ଘର କାନ୍ଥ ଆଲମାରୀ, ଖଟତଳ, ଭଣ୍ଡାରଘର, ପାଇଖାନା ଓ ଗାଧୁଆଘରର ସନ୍ତସନ୍ତିଆ ଜାଗା ଏବଂ ଅଳିଆ ଗଦା ପ୍ରଭୃତି ଅନେକ ଯାଗାରେ ଏମାନେ ଦେଖିବାକୁ ମିଳିଥାନ୍ତି ।



(ଅସରପା)

କୀଟ ପତଙ୍ଗ ଶ୍ରେଣୀର ବହୁ ପୁରାତନ ପ୍ରାଣୀ ରୂପେ ଅସରପା ପୃଥିବୀର ଅଧିକାଂଶ ଦେଶରେ ଦେଖାଯାନ୍ତି । ଗ୍ରୀଷ୍ମ ମଣ୍ଡଳୀୟ ଅଞ୍ଚଳରେ ଏମାନେ ଅଧିକ ସଂଖ୍ୟାରେ ବାସ

କରିଥାନ୍ତି । ସମଗ୍ର ପୃଥିବୀରେ ପ୍ରାୟ ତିନିହଜାର ପାଞ୍ଚସହ ପ୍ରକାର ଅସରପା ଅଛନ୍ତି । ସାଧାରଣତଃ ଆମ ଭାରତବର୍ଷରେ ମୋଟ ଦୁଇହଜାର ଅସରପା ଯଥା- ପେରିପ୍ଲାନେଟା ଆମେରିକାନା ଓ ବ୍ଲାଟାଓରିଣ୍ଟୋସିଲ୍ ନାମକରଣ କରାଯାଇଛି । ପେରିପ୍ଲାନେଟା ଆମେରିକାନ୍ ଆକରରେ ବଡ । ଆମେରିକାରୁ ବାଣିଜ୍ୟ ଜାହାଜରେ ଭାରତକୁ ଆସିଥିବାରୁ ଏମାନଙ୍କ ନାମକରଣ ଏପରି ରଖାଯାଇଛି । ଏମାନଙ୍କର ରଂଗ ଲୋହିତ ବାଦାମୀ । ବ୍ଲାଟା ଓରିଣ୍ଟୋସିଲ୍ ଜାତୀୟ ଅସରପା ମାନଙ୍କର ଗାଢ ଖଇରିଆ । ଉଭୟ ଜାତିର ଅସରପାଙ୍କର ଦୁଇଯୋଡା ଉନ୍ନତ ଧରଣର ପକ୍ଷଯୁକ୍ତ ଡେଣା ଥାଏ । ଉପରସ୍ତ ଦୁଇଟି ଡେଣା ଖୁବ୍ ଶକ୍ତ । ଏହା ତଳେ ଖୁବ୍ ପତଳା ଜରିପରି ଫିକା ବାଦାମୀ ରଙ୍ଗର ଆଉ ଦୁଇଟି ପକ୍ଷ ଥାଏ । ଏହିପରି ଦୁଇଯୋଡା ଡେଣା ଦ୍ୱାରା ଅସରପାର ଦେହ ଆବୃତ ହୋଇଥାଏ । ଅସରପାର ଶରୀରକୁ ତିନି ଭାଗରେ ଯଥା- ମସ୍ତକ, ବକ୍ଷ ଓ ଉଦରରେ ବିଭକ୍ତ କରାଯାଇଥାଏ । ଅସରପାର ଦେହର ଆକାର ଚେପ୍ଟା ଓ ଚିକ୍କଣ । କାଇଟିନ୍ ଜାତୀୟ ପଦାର୍ଥରେ ତିଆରି ଖୋଳପାରେ ଶରୀରକୁ ଆବୃତ କରି ରଖିଥାଏ ।

ଅସରପାର ମସ୍ତକଟି ତ୍ରିକୋଣାକାର ଓ ନିମ୍ନମୁଖୀ । ଦୁଇଟି ଢିଲା ଢିଲା ଆଖି ସହିତ ମସ୍ତକ ଉପରେ ଆଉ ଦୁଇଟି କଳା ରଂଗର ସୋରିଷ ସଦୃଶ ଆଖି ରହିଛି । ମୁଖ ଗହ୍ୱର ମସ୍ତକର ସମ୍ମୁଖଭାଗରେ ଥାଏ । ଏହାର ଠିକ୍ ଉପରି ଅଂଶରେ ଦୁଇଟି ଲମ୍ୱା ନିଶ ଥାଏ । ଏହି ଦୁଇ ନିଶ ଅସରପା ସର୍ଶେନ୍ଦ୍ରୀୟର କାର୍ଯ୍ୟ କରେ । ଏହା ସାହାଯ୍ୟରେ ଏମାନେ ପବନର ଗତି, ଶତ୍ରୁର ଆଗମନର ସୂଚନା ଓ ଖାଦ୍ୟ ପଦାର୍ଥର ସନ୍ଧାନ ପାଇଥାଏ । ଖାଦ୍ୟ ପଦାର୍ଥକୁ ପାଟିର ଉଭୟ ଦନ୍ତରିତ ଉର୍ଦ୍ଧ୍ୱ ଓ ଅଧଃ ହନୁ ସାହାଯ୍ୟରେ ଧରିଥାଏ । ପାଟି ଭିତରେ ଆଙ୍କୁଶାକାର ମାଂସାଳ ଜିହ୍ୱା ସାହାଯ୍ୟରେ ଖାଦ୍ୟକୁ ଚାଟି ଖାଇଥାଏ ।

ବକ୍ଷ ଓ ମୁଣ୍ଡକୁ ସଂଯୋଗ କରୁଥିବା କ୍ଷୁଦ୍ର ବେକ ସାହାଯ୍ୟରେ ଅସରପା ମୁଣ୍ଡକୁ ସବୁ ଦିଗକୁ ଘୁରାଇ ପାରେ । ଅସରପାର ତଳୁ ମୋଟ ଛ'ଟି ଗୋଡ ବାହାରିଥାଏ । ଗୋଡ ଗୁଡିକ ଦୃଢ, ଅଧିକ କ୍ରୀୟାଶୀଳ ଓ ଲମ୍ୱାଗୋଡ ସାହାଯ୍ୟରେ ଏହା ଖୁବ୍ ବେଗରେ ଡଗ ଡଗ ହୋଇ ଦୌଡି ପାରେ । ଅସରପାର ପକ୍ଷଯୁକ୍ତ ଡେଣା ଥିଲେହେଁ ଏହା ପ୍ରାୟ ଉଡିପାରେ ନାହିଁ । କେବଳ ଛୋଟ ଅସରପାମାନେ ଅଳ୍ପ ଖଣ୍ଡି ଉଡା ଦେଇ ଡେଇଁ ଦ୍ରୁତ ବେଗରେ

ପଳାଇ ଥାନ୍ତି । ଚାଲିଲା ବେଳେ ଏମାନେ ଏଣେ ତେଣେ ହୋଇ ଯାଆନ୍ତି । ସିଧା ସଳଖ ଯାଇ ପାରି ନଥାନ୍ତି । ଅସରପାର ଆଗ ଗୋଡ ଦୁଇଟି ସାହାଯ୍ୟରେ ଖାଦ୍ୟକୁ ଧରି ଖାଇଥାଏ । ବକ୍ଷର ପଛ ଅଂଶରେ ଉଦର ଅବସ୍ଥିତ । ଉଦର ଓ ବକ୍ଷ ତଳେ ଶ୍ୱାସ କ୍ରୀୟା ପାଇଁ ଦୁଇ ପାର୍ଶ୍ୱରେ ପ୍ରାୟ ଦଶଯୋଡା ଶ୍ୱାସ ରନ୍ଧ୍ର ରହିଥାଏ ।

ବଂଶ ବୃଦ୍ଧିରେ ସ୍ତ୍ରୀ ଅସରପାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସ୍ତ୍ରୀ ଅସରପା ମୋଟ ୧୬ଟି ଅଣ୍ଡା ଦେଇଥାଏ । ଅଣ୍ଡାଗୁଡିକୁ ଆଠଟି ଲେଖାଏଁ ଦୁଇ ଧାଡିରେ ଏକ ସେଲ୍‌ରେ ଉଦରର ଶେଷ ଭାଗରେ ଧରି ନିରାପଦ ଜାଗାପାଇଁ ଖୋଜିବୁଲେ । ନିରାପଦ ଅନ୍ଧାରୁଆ ଜାଗା ମିଳିଲାପରେ ଅଣ୍ଡା ପେଡି ବା ସେଲ୍‌ଟିକୁ ସେଠାରେ ଥୋଇ ନିଜ ପାଟିରୁ ଏକ ପ୍ରକାର ଅଠାଳିଆ ଲାଳ ବାହାର କରି ସେଥିରେ ଲଗାଇଥାଏ । ଏହି ପେଡି ଭିତରେ ଅଣ୍ଡା ବୃଦ୍ଧି ଘଟେ । ପ୍ରାୟ ମାସେରୁ ତିନିମାସ ଭିତରେ ଅଣ୍ଡା ଫୁଟେ ଛୁଆ ବାହାରେ । ଖରାଦିନେ ମାସେ ଦେଢ ମାସରେ ଛୁଆ ଫୁଟିଥାନ୍ତି । ଉତ୍ତାପ ଉପରେ ଅଣ୍ଡା ଫୁଟିବା କାର୍ଯ୍ୟ ନିର୍ଭର କରିଥାଏ । ଛୁଆ ଗୁଡିକ ପୂର୍ଣ୍ଣାଙ୍ଗ ପ୍ରାପ୍ତ ହେବା ପର୍ଯ୍ୟନ୍ତ ପ୍ରାୟ ସାତଥର ଖୋଳପା ତ୍ୟାଗ କରିଥାନ୍ତି । ଖୋଳପା ତ୍ୟାଗ କରିବା ପରେ ଅସରପାର ରଂଗରେ ପରିବର୍ତ୍ତନ ଘଟିଥାଏ । ସାଧାରଣତଃ ଅସରପାମାନେ ଦେଢବର୍ଷ ଯାଏ ବଞ୍ଚିଥାଆନ୍ତି । ବିପଦ ପ୍ରତି ଏମାନେ ଖୁବ୍ ସାବଧାନ ଥାନ୍ତି । ବିପଦର ସୂଚନା ଖୁବ୍ ଶୀଘ୍ର ପାଇପାରନ୍ତି । ବିପଦର ସୂଚନା ପାଇଲାମାତ୍ରେ ନିଜ ଦେହରୁ ଏକ ପ୍ରକାର ଦୁର୍ଗନ୍ଧ ତ୍ୟାଗକରି ଅନ୍ୟ ସାଥୀମାନଙ୍କୁ ବିପଦ ସମ୍ପର୍କରେ ସତର୍କ କରିଦେଇ ପାରନ୍ତି । ଦେହର ଆକାର ଚେପ୍‌ଟା ହୋଇଥିବାରୁ ଏବଂ ନମନୀୟ ହୋଇଥିବାରୁ ପତଳା ଫାଟ ଭିତରେ ପ୍ରବେଶକରି ଆତ୍ମ ଗୋପନ କରିଥାନ୍ତି । ଏମାନେ ଦ୍ରୁତ ଗତିରେ ଦୌଡି ପାରନ୍ତି । ଯଦିଓ ଭଲଭାବରେ ଉଡି ପାରନ୍ତି ନାହିଁ ତେବେ ଖଣ୍ଡେ ଦୂର ପ୍ରାଣ ବିକଳରେ ଉଡି ଯାଇ ପାରନ୍ତି ।

ଅସରପା ମାନେ ସର୍ବଖିଆ । ସବୁ ପଦାର୍ଥକୁ ଖାଦ୍ୟରୂପେ ଖାଇ ଜୀବନ ବଞ୍ଚାଇ ପାରନ୍ତି । ଫଳରେ ଏମାନେ ମନୁଷ୍ୟ ସମାଜରେ ରହିବାକୁ ଭଲ ପାଆନ୍ତି । ଭଣ୍ଡାରଘର, ରୋଷେଇଘର, ସନ୍ତସନ୍ତିଆ ଜାଗା ମାନଙ୍କରେ ରହି ଖାଦ୍ୟ ଅନ୍ୱେଷଣରେ ଲାଗିଥାନ୍ତି ।

ଅସରପା ବିଦେଶର କେତେକ ଦେଶରେ ଖାଦ୍ୟ ରୂପେ ବ୍ୟବହୃତ ହୋଇଥାଏ । ଏହା ବାଦେ ଏହାକୁ ଔଷଧ ରୂପେ ବ୍ୟବହାର କରାଯାଇଥାଏ । ଚିନି ସହିତ ଅସରପା ମିଶାଇ ଅଲସର ଓ କର୍କଟ ପରି ମାରାତ୍ମକ ରୋଗ ପାଇଁ ଔଷଧ ପ୍ରସ୍ତୁତ କରାଯାଇଥାଏ । ବିଜ୍ଞାନ ଗାରରେ କୀଟ ପତଙ୍ଗ ମାନଙ୍କ ବିଷୟରେ ଗବେଷଣା ନିମନ୍ତେ ଅସରପାକୁ ନମୁନା ସ୍ୱରୂପ ବ୍ୟବହାର କରାଯାଇଥାଏ ।

ଏସବୁ ସତ୍ତ୍ୱେ ଅସରପା ଆମର ଖାଦ୍ୟ ପଦାର୍ଥ, ବହି ଓ ଲୁଗାପଟା ନଷ୍ଟକରି ପକାଇ ଥାଆନ୍ତି । ଏହା ବାଦେ ରୋଗ ସଂକ୍ରମଣରେ ଏମାନେ ମଧ୍ୟ କାରଣ ହୋଇଥାନ୍ତି । ଏଣୁ ଏମାନେ ଆମର ଅବାଞ୍ଛିତ ପତଙ୍ଗ, ଏମାନଙ୍କୁ ମାରିବା ପାଇଁ ବିଭିନ୍ନ ପ୍ରକାର ଔଷଧ, କୌଶଳ ଓ ପ୍ରତିଶେଧକ ଦ୍ରବ୍ୟ ବ୍ୟବହାର କରାଯାଉଛି । ତଥାପି ଏମାନଙ୍କୁ ସମୂଳେ ଧ୍ୱଂସ କରିବା ମନୁଷ୍ୟ ସମାଜ ପକ୍ଷେ ସମ୍ଭବ ହୋଇ ପାରି ନାହିଁ । ଆଣବିକ ଅସ୍ତ୍ରଶସ୍ତ୍ର ତେଜସ୍କ୍ରିୟ ରଶ୍ମି ଏମାନଙ୍କର କୌଣସି କ୍ଷତି ଘଟାଇ ପାରିନାହିଁ । ଏଣୁ ବୈଜ୍ଞାନିକମାନେ ମତ ଦିଅନ୍ତି ପରମାଣୁ ଯୁଦ୍ଧ ହେଲେ ମନୁଷ୍ୟ ସମାଜ ଧରାବକ୍ଷରୁ ଲୋପ ପାଇଗଲେ ମଧ୍ୟ ଅସରପା କୁଳ ବଞ୍ଚି ରହିବେ ।



# ଛାରପୋକ (BED BUG)

ଆମେ ସମସ୍ତେ ଛାରପୋକ ଦେଖିଛେ । ଦିନେ ହେଉ ପଛେ ଛାର ପୋକର କାମୁଡା ଖାଇଛେ । ଛାରପୋକର ଅନ୍ୟନାମ ଓଡ଼ଶ । ଘରେ ଥିବା ଓଡଶକୁ ଇଂରାଜୀ ଭାଷାରେ 'ବେଡ ବଗ୍' କହନ୍ତି । ଏମାନେ ମନୁଷ୍ୟ ସମାଜ ସହିତ ବହୁ ପ୍ରାଚୀନ କାଳରୁ ରହି ଆସିଛନ୍ତି । ଆଦିମ ଅଧିବାସୀ ମାନଙ୍କ ସହିତ ବଣ ଜଙ୍ଗଲ ଓ ପାହାଡରେ ବାସ କରୁଥିଲେ ବୋଲି ଐତିହାସିକମାନେ ମତପୋଷଣ କରିଛନ୍ତି । ଏମାନେ ମନୁଷ୍ୟର ରକ୍ତ ପିଇ ବଞ୍ଚନ୍ତି ।






ଓଡଶ ଅଣ୍ଡଜ । ଅଣ୍ଡାରୁ ଛୁଆ ଫୁଟାଇ ଥାଆନ୍ତି । ଓଡଶର ରଙ୍ଗ ଦେଖିବାକୁ ଖଇରିଆ । ୩୦ ରୁ ୩୫ ପ୍ରକାର ଓଡଶ ଅଛନ୍ତି । ଘରେ ଥିବା ଓଡଶ ବ୍ୟତୀତ ଅନ୍ୟ ଏକ ପ୍ରକାର ଓଡଶ ଅଛନ୍ତି । ଯେଉଁମାନେ ପଶୁପକ୍ଷୀ ମାନଙ୍କ ଠାରୁ ରକ୍ତ ଶୋଷି ବଞ୍ଚିଥାଆନ୍ତି । ଘରେ ଥିବା ଓଡଶ ସାଧାରଣତଃ ଶୋଇବା ଘରେ ବେଶି ଥାଆନ୍ତି । ଘରର ଖଟ ସନ୍ଧି, କାନ୍ଥର ଖଣ୍ଡିଆ ଜାଗା ବା ଖୋଲ, ମେଜ ବା ଗଦିତଳେ, ମଶିଣା ଚଦର ଓ କବାଟ ଫାଙ୍କ ମାନଙ୍କରେ ଲୁଚି ରହିଥାନ୍ତି । ଓଡଶମାନେ ରାତ୍ରୀଚର ଜୀବ । ରାତି ହେଲେ ଏମାନେ ମଣିଷ ଦେହରୁ ରକ୍ତ ପିଇବା ପାଇଁ ବାହାରନ୍ତି । ଆମେ ନିଘୋଡ ନିଦରେ ଶୋଇଲାପରେ ଏମାନେ ଧିରେଧିରେ ଆମ ଦେହ ପାଖକୁ ଚାଲି ଆସିଥାଆନ୍ତି । ସେମାନଙ୍କ ମୁଣ୍ଡରେ ଇଂଜେକ୍‌ସନ ଛୁଞ୍ଚିପରି ମୁନିଆ ଓ ପୋଲା ଶୁଣ୍ଢଟିଏ ଅଛି । ଏହି ଶୁଣ୍ଢ ଦ୍ୱାରା ଆମ ଦେହରେ ରକ୍ତ ପିଇ ଯାଇଥାଏ । ପ୍ରାୟ ୧୦/୧୫ ମିନିଟ୍ ମଧରେ ଏମାନେ ନିଜର ଉଦରକୁ ରକ୍ତରେ ପୂର୍ଣ୍ଣକରି ଦେଇଥାନ୍ତି । ଥରେ ପେଟ ଭର୍ତ୍ତି କରି ଖାଇଦେଲେ ପ୍ରାୟ ୮/୧୦ ଦିନ ପର୍ଯ୍ୟନ୍ତ ଆଉ ଖାଇବା ଦରକାର ପଡି ନଥାଏ । ମଣିଷ ରକ୍ତ ନପାଇଲେ ଏମାନେ ମୂଷା, ବିରାଡି, କୁକୁର ପ୍ରଭୃତିଙ୍କ ରକ୍ତ ପିଇ ବଞ୍ଚନ୍ତି । ପକ୍ଷୀମାନଙ୍କଠାରୁ ରକ୍ତ ପିଇ ବଞ୍ଚୁଥିବା ଓଡଶମାନେ ସାଧାରଣତଃ ଘରମାନଙ୍କରେ ଦେଖାଯାଆନ୍ତି ନାହିଁ । ଏମାନେ ବାଦୁଡି ପ୍ରଭୃତି ପକ୍ଷୀମାନଙ୍କ ପର ଦେହରେ ଲୁଚିଥାନ୍ତି କିମ୍ବା ପକ୍ଷୀମାନଙ୍କ ବସାରେ ଥାନ୍ତି । ସୁଯୋଗ ଦେଖି ସେମାନଙ୍କଠାରୁ ରକ୍ତ ଶୋଷି ବଞ୍ଚନ୍ତି । ବେଳେବେଳେ ଅନ୍ୟ ଏକ ପ୍ରକାର ଓଡଶ ଦେଖାଯାନ୍ତି । ଯେଉଁମାନେ କାମୁଡିଲେ  ଦେହ ଫଳିଯାଏ ଓ କୁଣ୍ଡାଇ ହୁଏ ଏବଂ ଜ୍ୱାଳା ମଧ ସୃଷ୍ଟିହୁଏ । ଘର ଓଡଶ କାମୁଡିଲେ ସେତେଟା କଷ୍ଟ ହୁଏ ନାହିଁ । ଆମ ଭାରତରେ ସିମେକ୍‌ସ ହେକ୍ଷିପ୍‌ଟେରସ୍ ଜାତୀୟ ଓଡଶ ଦେଖାଯାଆନ୍ତି । ଏହି ଜାତୀୟ ଓଡଶମାନେ ଗ୍ରୀଷ୍ମ ମଣ୍ଡଳୀୟ ଜଳବାୟୁରେ ବାସ କରିଥାଆନ୍ତି । 'ସିମେକ୍‌ସ ଲେକ୍‌ଟାହାରିୟସ୍' ଜାତିର ଓଡଶ ନାତିଶୀତୋଷ୍ଣ ଜଳବାୟୁରେ ରହନ୍ତି । ଭାରତରେ ଅରୁଣାଚଳ ପ୍ରଦେଶ, ଆସାମ ଓ ନେପାଳର କେତେକ ଅଞ୍ଚଳରେ ମଧ ଏହି ଜାତୀୟ ଓଡଶ ଦେଖାଯାନ୍ତି ।

ଓଡଶର ଆକାର କ୍ଷୁଦ୍ର ଅସରପାର ଆକାର ଓ ରଙ୍ଗ ସହିତ କେତେକ ସାମଞ୍ଜସ୍ୟ ରହିଛି । ଓଡଶର ପକ୍ଷ ବା ଡେଣା ନଥାଏ । ଓଡଶର ମୁଣ୍ଡଟି ଦେହ ତୁଳନାରେ ଯଥେଷ୍ଟ ଛୋଟ । ଅସରପାର ଦେହ ଚେପ୍‌ଟା କିନ୍ତୁ ଓଡଶର ଦେହ ଗୋଲାକାର ବା ଡିମ୍ବାକୃତିର ହୋଇଥାଏ । ଅଣ୍ଡିରା ଓଡଶର ବକ୍ଷଦେଶ ଚଉଡା ଏବଂ ଉଦର ଶେଷ ଅଂଶ ଆଡକୁ ଗୋଜିଆ ହୋଇଥାଏ । ଓଡଶର ମୁଣ୍ଡ ପାଖରୁ ଦୁଇଟି ଉପାଙ୍ଗ ପଦାକୁ ବାହାରିଥାଏ । ମୁଣ୍ଡରେ ଦୁଇଟି ଆଖିଥାଏ କିନ୍ତୁ ତାହା ସେତେ ଉନ୍ନତ ନୁହେଁ । ଆଖି ଆଉ ମୁଣ୍ଡର ମଧସ୍ଥଳରୁ

ହଳେ ଗଣ୍ଠି ଗଣ୍ଠିଆ ନାଡ ବାହାରିଥାଏ । ଏଗୁଡିକ ଖୁବ୍ ସମ୍ବେଦନଶୀଳ । ଓଡଶ ଏହି ନାଡ ଦୁଇଟିକୁ ମନଇଚ୍ଛା ଏପଟ ସେପଟ କରି ବୁଲାଇପାରେ । ବକ୍ଷ ଦେଶରୁ ତିନିଯୋଡା ଗୋଡ ବାହାରିଥାଏ । ଗୋଡଗୁଡିକ ଗଣ୍ଠି ଗଣ୍ଠିଆ ଓ ଟାଆଁସିଆ ଲୋମଯୁକ୍ତ । ଅସରପାର ଦେହସାରା ଟାଆଁସିଆ ଲୋମଥାଏ । ବେଳେବେଳେ ଏହି ଲୋମ ଗୁଡିକ ସଂକ୍ରାମକ ରୋଗର କାରଣ ହୋଇଥାନ୍ତି ଏବଂ ମନୁଷ୍ୟର ସର୍ବନାସ କରିଥାଆନ୍ତି ।

ଓଡଶର ପ୍ରଧାନ ଖାଦ୍ୟ ଜୀବନ୍ତ ରକ୍ତ । ରକ୍ତ ଶୋଷିବା ପାଇଁ ଏମାନେ ଧୂରନ୍ଧର । ମଣିଷ ବା ଅନ୍ୟ ପଶୁପକ୍ଷୀ ମାନଙ୍କର ଦେହର ଉତ୍ତାପକୁ ଏମାନେ ୪/୫ ସେଣ୍ଟିମିଟର ଦୂରରୁ ଅନୁଭବ କରି ପାଖକୁ ଚାଲି ଆସିଥାନ୍ତି । ଓଡଶମାନେ ଖୁବ୍ ବୁଦ୍ଧିମାନ । ଲୁଚିଛପି ରକ୍ତ ଶୋଷି ଥାଆନ୍ତି ।

ବଂଶ ବିସ୍ତାର ପାଇଁ ସ୍ତ୍ରୀ ଛାରପୋକ ଅଣ୍ଡିରା ଛାରପୋକ ମିଳିତ ହୋଇ ଥାଆନ୍ତି । ଏହାପରେ ସ୍ତ୍ରୀ ଛାରପୋକ ନିରାପଦ ସ୍ଥାନରେ ପ୍ରାୟ ୩୦ ରୁ ୪୦ଟି ଯାଏ ଅଣ୍ଡା ଦେଇଥାଏ । ଅଣ୍ଡାଗୁଡିକ ଦେଖିବାକୁ ଧଳା । ଅଣ୍ଡାଗୁଡିକୁ ପାଟିରୁ ଲାଳ ବାହାର କରି ଏକତ୍ର ସଜାଇ ରଖାଯାଏ । ପ୍ରାୟ ୭ ରୁ ୧୦ ଦିନ ମଧ୍ୟରେ ଅଣ୍ଡା ଫୁଟିଥାଏ । ଗ୍ରୀଷ୍ମଦିନ ଅପେକ୍ଷା ଥଣ୍ଡା ଦିନରେ ଅଣ୍ଡା ବିଳମ୍ବରେ ଫୁଟିଥାଏ । ପ୍ରଥମ ଅବସ୍ଥାରେ ଓଡଶ ଛୁଆ ଗୁଡିକ ଧଳା ଧଳା ଦେଖାଯାନ୍ତି । ପ୍ରାୟ ଜନ୍ମ ହେବାର ୮ଘଣ୍ଟାରୁ ୧୨ଘଣ୍ଟା ପରେ ଛୁଆ ଓଡଶମାନେ ରକ୍ତ ଶୋଷିବାକୁ ସମର୍ଥ ହୋଇଥାଆନ୍ତି । ପ୍ରାୟ ମାସକ ମଧ୍ୟରେ ଛୁଆ ଓଡଶ ପୂର୍ଣ୍ଣାଙ୍ଗ ଅବସ୍ଥାରେ ପହଞ୍ଚିଥାନ୍ତି । ଛୁଆ ଓଡଶର ଧଳା ଦେହ ରକ୍ତ ଶୋଷିଲାପରେ ନାଲା ହୋଇଯାନ୍ତି ।

ଯେଉଁ ଘରେ ଓଡଶ ଥାନ୍ତି, ସେହି ଘର ଫୁରୁକୁଟିଆ ଫୁରୁକୁଟିଆ ଗନ୍ଧାଇଥାଏ । ଓଡଶଙ୍କ ଦେହରୁ ଏ ଗନ୍ଧ ବାହାରି ନଥାଏ । ଓଡଶର ଦୁଇ ପଛ ଗୋଡରେ ଥିବା ଦୁଇଟି ଥଳୀରୁ ଏହି ଗନ୍ଧ ବାହାରିଥାଏ । ଏହି ଗନ୍ଧ ସାହାଯ୍ୟରେ ସେମାନେ ଭାବ ବିନିମୟ କରିଥାଆନ୍ତି । ମନୁଷ୍ୟକୁ ଏହି ଦୁର୍ଗନ୍ଧ ଅତିଷ୍ଟ କରିଥାଏ ।

ଛାରପୋକ ମନୁଷ୍ୟ ପାଇଁ କ୍ଷତିକାରକ ପରାଙ୍ଗ ପୁଷ୍ଟ ଜୀବ । ରକ୍ତ ଶୋଷିନେବା, ସଂକ୍ରାମକ ରୋଗର ବାହାକ ହେବାଭଳି କାର୍ଯ୍ୟ ଓଡଶ କରିଥାଏ । ଏହି ଅବାଞ୍ଛିତ ଜୀବଠାରୁ ଦୂରେଇ ରହିବାକୁ ହେଲେ ଆମକୁ ସାବଧାନ ହେବାକୁ ପଡିବ । ଘରର କାନ୍ଥକୁ ଚୂନ ଦ୍ୱାରା ଲିପିବା ସହିତ ଲୁଗାପଟା, ଶେଜ, ତକିଆ ସଫା ରଖିବା ଦରକାର । ଓଡଶ ଥିବା ଖଟ ଓ ଅନ୍ୟାନ୍ୟ ଫାଙ୍କା ଜାଗା ମାନଙ୍କରେ କିରୋସିନି, ଡିଡିଟି ଏବଂ ଟିକ୍‌ଟୋଣ୍ଟି ପରି କେତେକ ଔଷଧ ପକାଇ ପିଚ଼କାରୀ କରିବା ଦରକାର ।

# ପିମ୍ପୁଡି (ANT)

ପିମ୍ପୁଡି ଏକ ସାମାଜିକ କୀଟ । ଏମାନେ ପୃଥିବୀର ସବୁ ଜାଗାରେ ଦେଖାଯାଆନ୍ତି । କଠୋର ପରିଶ୍ରମୀ ଶକ୍ତିଶାଳୀ, ବୁଦ୍ଧିମାନ ଓ ଏକତାବଦ୍ଧ କୀଟ । ତେଣୁ ଏମାନେ ଯେକୌଣସି କଠିନ କାର୍ଯ୍ୟକୁ କରିବାକୁ ସକ୍ଷମ । ସବୁବେଳେ କର୍ମ ଚଞ୍ଚଳ । ଖାଦ୍ୟ ଅନ୍ୱେଷଣ ଓ ସଂଗ୍ରହରେ ସର୍ବଦା ବ୍ୟସ୍ତ ଥାଆନ୍ତି । ପିମ୍ପୁଡି ଏକ କ୍ଷୁଦ୍ର କୀଟ ହେଲେ ମଧ୍ୟ ଏମାନଙ୍କର ଶୃଙ୍ଖଳା, ସାଙ୍ଗଠନିକ ଜୀବନଧାରଣ ପ୍ରଣାଳୀ ଓ ଚାଲିଚଳଣୀ ଅନୁଧାନର ବିଷୟ ।



( ପିମ୍ପୁଡି )

ପିମ୍ପୁଡିର ସମଗ୍ର ଶରୀରକୁ ମସ୍ତକ, ବକ୍ଷ ଓ ଉଦର ଏହିପରି ତିନିଭାଗରେ ବିଭକ୍ତ କରାଯାଇଛି । ଏମାନଙ୍କର ମସ୍ତକର ଉପରିଭାଗରେ ଦୁଇଟି ଉଜ୍ଜ୍ୱଳ ଚକ୍ଷୁଥିବାରୁ ମୁଣ୍ଡ ବୁଲାଇ ସହଜରେ ସବୁ ଦେଖିଥାଆନ୍ତି । ଏମାନଙ୍କର ପାଟିରୁ ସାମାନ୍ୟ ଉପରକୁ ଦୁଇପାଖରେ

ଦୁଇଟି ଶୁଙ୍କ ପରି ସ୍ପର୍ଶଶକ୍ତିଯୁକ୍ତ ଅଙ୍ଗ ଥାଏ । ଏହା ସ୍ପର୍ଶେନ୍ଦ୍ରୀୟ ପରି କାର୍ଯ୍ୟ କରେ । ଯାହା ଦ୍ୱାରା ପିମ୍ପୁଡି ରାସ୍ତାଘାଟ, ଶତ୍ରୁମିତ୍ର, ଥଣ୍ଡା କି ଗରମ ବାରିପାରେ । ପରସ୍ପର ମଧ୍ୟରେ ଏହା ସାହାଯ୍ୟରେ ଭାବର ବିନିମୟ କରିଥାନ୍ତି । ଏହାର ପାଟିର ଉପରେ ଉର୍ଦ୍ଧ୍ୱହନୁ ଓ ନିମ୍ନରେ ଅଧୋହନୁ ଥାଏ । ଅଧୋହନୁର ଭିତର ପାଖ ଦାନ୍ତଯୁକ୍ତ । ଏହା ସାହାଯ୍ୟରେ ପିମ୍ପୁଡି ଖାଦ୍ୟ ବସ୍ତୁକୁ କାମୁଡି ଧରେ ଓ ଚୋବାଇ ଥାଏ ।

ପିମ୍ପୁଡି ଶରୀର ଗଣ୍ଠିମୁକ୍ତ ହୋଇଥିବାରୁ ଏହା ସନ୍ଧିପଦ କୀଟପତଙ୍ଗ ଶ୍ରେଣୀ ଅନ୍ତର୍ଭୁକ୍ତ ହୋଇଥାଆନ୍ତି । ଏମାନଙ୍କ ଶରୀର କାଇଟିନ୍ ଜାତୀୟ ଏକ ଶକ୍ତ ଓ କଠିନ ଆବରଣରେ ଆବୃତ । ପିମ୍ପୁଡିର ବକ୍ଷ ମସ୍ତକ ତୁଳନାରେ କ୍ଷୁଦ୍ର ହେଲେ ମଧ୍ୟ ଏହା ଖୁବ୍ ଶକ୍ତ । ଏଥିରୁ ତିନିଯୋଡା ଅର୍ଥାତ୍ ମୋଟ ଛଅ ଗୋଟି ଗୋଡ ବାହାରିଥାଏ । ପିମ୍ପୁଡିର ଶରୀର ଖୁବ୍ ହାଲୁକା । ଗୋଡର ଗଠନ ପ୍ରଣାଳୀ ଏପରି ହୋଇଥାଏ ଯେ ଏହା ଦ୍ୱାରା ଏମାନେ ସବୁ ଜାଗାକୁ ଚ ଢି ପାରନ୍ତି ।

ପିମ୍ପୁଡିର ଉଦରଟି ସବୁଠାରୁ ବଡ । ଏମାନେ ଗୋଟିଏ ସ୍ତ୍ରୀ ପିମ୍ପୁଡିକୁ ନେଇ ଗୋଟିଏ ଦଳ ଗଠନ କରିଥାଆନ୍ତି । ସ୍ତ୍ରୀ, ପୁରୁଷ ଓ କର୍ମୀ ଏହିପରି ତିନି ପ୍ରକାର ପିମ୍ପୁଡି ଏହି ଦଳରେ ଥାଆନ୍ତି । ସ୍ତ୍ରୀ ଓ ପୁରୁଷ ପିମ୍ପୁଡି ମାନଙ୍କର ପକ୍ଷ ଜନ୍ମେ ଓ ଏହି ପକ୍ଷ ଗୋଟିଏ ଦିନପରେ ଝଡିପଡେ ଓ ପିମ୍ପୁଡିର ମୃତ୍ୟୁ ଘଟେ । ଗୋଟିଏ ପିମ୍ପୁଡି ଦଳରେ ଅନ୍ୟୁନ ତିନିଶହରୁ ଚାରିଶହ ଯାଏ ପିମ୍ପୁଡି ଥାନ୍ତି । ବୟସ୍କ ପୁରୁଷ ପିମ୍ପୁଡି ଓ ସ୍ତ୍ରୀ ପିମ୍ପୁଡି ବା ରାଣୀ ପିମ୍ପୁଡିକୁ ବଂଶ ବୃଦ୍ଧି ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟ କରିବାକୁ ପଡି ନଥାଏ । କର୍ମୀ ପିମ୍ପୁଡିମାନେ ଏମାନଙ୍କ ସେବା ଶୁଶ୍ରୁଷା ଓ ଅଣ୍ଡାର ଯତ୍ନ ନେଇଥାନ୍ତି । ଏପରିକି ବନ୍ୟା ସମୟରେ କର୍ମୀ ପିମ୍ପୁଡିମାନେ ଅଣ୍ଡା ଗୁଡିକୁ ନିରାପଦ ସ୍ଥାନକୁ ବୋହି ନେଇଥାଆନ୍ତି । ଖାଦ୍ୟ ସଂଗ୍ରହ ସହିତ ଶତ୍ରୁର ମୁକାବିଲା କରିବା ଏମାନଙ୍କର ପ୍ରଧାନ କାର୍ଯ୍ୟ । ପିମ୍ପୁଡିମାନେ ଅଣ୍ଡଜ, ଏମାନେ ଅଣ୍ଡାରୁ ଜନ୍ମ ନେଇଥାଆନ୍ତି ।

ପିମ୍ପୁଡିମାନେ ସାଧାରଣତଃ ମିଠା ରସଯୁକ୍ତ ଖାଦ୍ୟ ଖାଇବାକୁ ଭଲ ପାଆନ୍ତି । ଏମାନେ ଆଖୁଗଛର ମିଠାରସ, କଅଁଳିଆ ପତ୍ର, ଛୋଟ ଛୋଟ କୀଟପତଙ୍ଗ ଓ ମୃତ ପ୍ରାଣୀକୁ ଖାଇବାକୁ ଭଲ ପାଆନ୍ତି । ଗୋଟିଏ ପିମ୍ପୁଡି ନିଜ ଓଜନର ପ୍ରାୟ ୪୦/୫୦ ଗୁଣ

ଓଜନ ବିଶିଷ୍ଟ ପଦାର୍ଥକୁ ଅକ୍ଲେଶରେ ଟେକି ନେଇ ପାରେ । ପ୍ରାୟ ନିଜ ଓଜନଠାରୁ ତିନିଶହ ଗୁଣ ଓଜନବିଶିଷ୍ଟ ପଦାର୍ଥକୁ ଟାଣିଟାଣି ନେଇ ଯାଇପାରେ ।

ପିମ୍ପୁଡିମାନେ ଅତ୍ୟନ୍ତ ସହଯୋଗୀ । ଏମାନଙ୍କର ସହଯୋଗ ବୁଦ୍ଧି ଓ ଶୃଙ୍ଖଳା ଅନ୍ୟ କୌଣସି ପ୍ରାଣୀଠାରେ ପ୍ରାୟ ଦେଖାଯାଏ ନାହିଁ । କୌଣସି ଏକ ବଡ ଖାଦ୍ୟର ମିଳିତ ଭାବରେ ସେହି ଖାଦ୍ୟକୁ ଟାଣି ଟାଣି ନେଇ ଯାଉଥିବା ପ୍ରାୟ ଦେଖା ଯାଇଥାଏ ।

ପିମ୍ପୁଡିମାନେ ଅକ୍ଲାନ୍ତ ପରିଶ୍ରମୀ ଓ ଶୃଙ୍ଖଳିତ କୀଟ । ସବୁବେଳେ ଖାଦ୍ୟ ସଂଗ୍ରହରେ ଲାଗିଥାନ୍ତି । ଶୃଙ୍ଖଳିତ ଭାବେ ଗୋଟିଏ ଧାଡିରେ ସେମାନେ ଯିବା ଆସିବା ଚଳାଇଥାନ୍ତି । ଦଳେ ଖାଦ୍ୟ ବୋହିନେଇ ବସାରେ ରଖି ଫେରୁଥିବା ବେଳେ ଅନ୍ୟଦଳେ ଖାଦ୍ୟ ବସାକୁ ନେଇ ଯାଉଥିବା ପିମ୍ପୁଡି ଧାଡିକୁ ଲକ୍ଷକଲେ ଜଣାଯାଏ ଯେ, ସେମାନେ ଧାଡି ବଦଳାନ୍ତି ନାହିଁ ।

ପୃଥିବୀରେ ପ୍ରାୟ ଛଅହଜାର ପ୍ରକାର ପିମ୍ପୁଡି ଅଛନ୍ତି । ସେମାନଙ୍କ ମଧ୍ୟରୁ ନାଲି ପିମ୍ପୁଡି, କାଠ ପିମ୍ପୁଡି, ଗନ୍ଧରା ପିମ୍ପୁଡି, ଡଗରା, ଗଛ ପିମ୍ପୁଡି ବା କାଇ, ବାଲି ଜନ୍ଦା, ବଡ କଳା ପିମ୍ପୁଡି ବା କଳା ପିମ୍ପୁଡି ଆମର ଅତି ପରିଚିତ । ବାଲିଜନ୍ଦା ଏହି ଜାତିର ଏକ ଦୁର୍ଦ୍ଧର୍ଷ ପିମ୍ପୁଡି । ଦେଖିବାକୁ କଳା, ସାହାସୀ ଓ ପ୍ରତିହିଂସା ପରାୟଣ । ଏମାନେ ଜନ ବସତିଠାରୁ ଦୂରରେ ବଣ ଜଙ୍ଗଲ ଭିତରେ ରହନ୍ତି । ଏମାନେ କାମୁଡିବା ଜାଗା ଫୁଲିଉଠେ ଏବଂ ଜୋରରେ ବିନ୍ଧା ହୁଏ । ସାଧାରଣତଃ ଏମାନେ ରାତ୍ରୀରେ ଶିକାର ଅଭିଯାନ ଆରମ୍ଭ କରିଥାଆନ୍ତି । ଦିନବେଳେ ଆତ୍ମଗୋପନ କରନ୍ତି । ସେହିପରି କାଇ ପିମ୍ପୁଡିମାନେ ସାଧାରଣତଃ ଆମ୍ବ, ପଣସ ପ୍ରଭୃତି ଗଛର କଅଁଳ ପତ୍ରରେ ବସାବାନ୍ଧି ରହିଥାନ୍ତି । ନାଲି ପିମ୍ପୁଡିମାନେ ମାଟିତଳେ ଶୁଖିଲା ଜାଗାରେ ସରୁଗାତ କରି ମଞ୍ଜାବାନ୍ଧି ରହିଥାଆନ୍ତି । ବର୍ଷାଦିନ ପୂର୍ବରୁ ଖାଦ୍ୟ ସଂଗ୍ରହ କରି ଏହି ବସାରେ ରଖିଥାଆନ୍ତି । ବର୍ଷାଦିନେ ପିମ୍ପୁଡିମାନେ ନିରାପଦରେ ସଞ୍ଚିତ ଖାଦ୍ୟକୁ ଖାଇ ବସାରେ ରହିଥାନ୍ତି । ବନ୍ୟା ହେବାର ସୂଚନା ପାଇଲେ ସାଧାରଣତଃ ପିମ୍ପୁଡିମାନେ ଏହି ଗାତ ବା ବସାରୁ ପଦାକୁ ବାହାରି ନିରାପଦ ସ୍ଥାନ ଖୋଜିଥାନ୍ତି ।

ପିମ୍ପୁଡିମାନଙ୍କର ଘ୍ରାଣ ଶକ୍ତି ଖୁବ୍ ବେଶି । ଏମାନେ ମନୁଷ୍ୟର ବହୁତ କ୍ଷତି କରିଥାଆନ୍ତି । ଘରେଥିବା ମିଠା ଖାଦ୍ୟ ପଦାର୍ଥକୁ ଖାଇ ଯାଆନ୍ତି ଏବଂ ଅନ୍ୟ ଆଡେ ବୋହି

ନିଅନ୍ତି । ବାଡି ବଗିଚାରେ ମଧ୍ୟ ଏମାନଙ୍କ ପ୍ରାଦୁର୍ଭାବ କିଛି କମ୍ ନୁହେଁ । ଅର୍ଥକାରୀ ଫସଲର ଚାରା ଗଛକୁ ଖାଇ ଯାଆନ୍ତି । ଏମାନଙ୍କ କବଳରୁ ଖାଦ୍ୟ ପଦାର୍ଥ ରଖିବାକୁ ବିଭିନ୍ନ ଉପାୟ କରିବାକୁ ପଡିଥାଏ । ଦୋକାନରେ ମିଠା ଜିନିଷ ଥିବା ଆଲମାରୀର ଖୋରା ତଳେ ଜଳପାତ୍ର ରଖାଯାଇଥାଏ । ଫସଲକୁ ରକ୍ଷା କରିବାକୁ ପାଉଁଶ ମିଶା ଗ୍ରାମାକ୍ସିନି ପ୍ରଭୃତି ପକାଇବାକୁ ପଡିଥାଏ । ଏମାନେ ଅନେକ ଅପକାର କରିଥାନ୍ତି ।

ଉପରୋକ୍ତ ଅପକାରକୁ ବାଦଦେଲେ ଏମାନେ ଆମର ଅନେକ ଉପକାର ମଧ୍ୟ କରିଥାନ୍ତି । ଫସଲରେ ଲାଗିଥିବା ଅନେକ ଅନିଷ୍ଟକାରୀ ପୋକ ଯୋକଙ୍କୁ ଖାଇ ଯାଇଥାନ୍ତି । ଶଶ୍ୟ ନଷ୍ଟକାରୀ କୀଟ ମାନଙ୍କୁ ନିଜର ଗର୍ଭସ୍ଥ କରି ଦେଇଥାନ୍ତି । ମୃତ ଓ ପଙ୍ଗୁ କୀଟ ପତଙ୍ଗ ମାନଙ୍କୁ ଟାଣି ନେଇ ଖାଇ ଯାଆନ୍ତି । ପିମ୍ପୁଡି ମଧ୍ୟ ଔଷଧ ରୂପେ ବ୍ୟବହୃତ ହୋଇଥାଏ । ଏହିପରି ଭାବେ ପିମ୍ପୁଡିମାନେ ଆମର ଉପକାରରେ ମଧ୍ୟ ଆସିଥାଆନ୍ତି ।





# କଙ୍କଡା ବିଛା (SCORPION)

କଙ୍କଡା ବିଛା ଦେଖିଲେ ଆମ ଦେହ ଶୀତେଇ ଉଠେ, ଲୋମ ଟାଙ୍କୁରି ଉଠେ ଓ ମନରେ ଭୟ ସଂଚାର ହୋଇଥାଏ । କାରଣ ଏମାନେ ବିଷଧର । କଙ୍କଡା ବିଛା ବିଷକୁ ନାଉଡ ସାହାଯ୍ୟରେ ଅନ୍ୟ ଶରୀରକୁ ପ୍ରବେଶ କରାଇଥାଏ । ଏହି ବିଷ ଅନ୍ୟ ଶରୀରରେ ପ୍ରବେଶ କରିବା ମାତ୍ରେ ଜ୍ୱାଳା ଓ ବିନ୍ଧା ସୃଷ୍ଟି ହୋଇଥାଏ ।



(କଙ୍କଡା ବିଛା)

ଆମ ପୃଥିବୀରେ ପ୍ରାୟ ୫୦୦ ରୁ ୬୦୦ ପ୍ରକାର ବିଛା ଅଛନ୍ତି । ଏମାନଙ୍କର ଦେହର ଲମ୍ବା ୫ ସେ.ମି. ରୁ ୨୫ ସେ.ମି. ପର୍ଯ୍ୟନ୍ତ ହୋଇଥାଏ । ସାଧାରଣତଃ ପୁରୁଷ ବିଛା ମାନଙ୍କର ଲମ୍ବା ସ୍ତ୍ରୀ ବିଛା ମାନଙ୍କର ଠାରୁ ଛୋଟ । ଏମାନଙ୍କର ଲମ୍ବା ୫ ରୁ

୧୦ସେ.ମି. ପର୍ଯ୍ୟନ୍ତ ଥାଏ । ସ୍ତ୍ରୀ ବିଛାର ଲମ୍ବା ୧୨ସେ.ମି. ରୁ ୨୦/୨୨ସେ.ମି. ପର୍ଯ୍ୟନ୍ତ ହୋଇଥାଏ ।

ବିଛାର ମୁଣ୍ଡ ନଥାଏ କହିଲେ ଭୁଲ୍ ହେବ । କାରଣ ଏହାର ମୁଣ୍ଡ ସ୍ପଷ୍ଟ ଜଣାପଡେ ନାହିଁ । ଏମାନଙ୍କର ଶରୀରକୁ ସାଧାରଣତଃ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ । ଦେହର ଉପରି ଭାଗ କାଇଟିନ୍ ଜାତୀୟ ପଦାର୍ଥର ଆବରଣ ଥାଏ । ଫଳରେ ଦେହର ମାଂସାଳ ଅଂଶ ଶତ୍ରୁଠାରୁ ନିରାପଦରେ ରଖିଥାଏ । ବିଛା ଏକ ସନ୍ଧିପଦ ପ୍ରାଣୀ । ଏହାର ଗଣ୍ଡିର ଦୁଇଟି ପାଖରୁ ଦୁଇଟି ସଣ୍ଢ଼ୁଆସୀ ପରି ଉପାଙ୍ଗ ଏବଂ ଆଠଗୋଟି ଗୋଡ ବାହାରିଥାଏ । ଶଣ୍ଢ଼ୁଆସୀ ପରି ବାହାରିଥିବା ଦୁଇ ଉପାଙ୍ଗ ଦ୍ୱାରା ଏମାନେ ଶୀକାର ଧରି ଥାଆନ୍ତି । ବିଛାର ସର୍ବାଙ୍ଗ ଗଣ୍ଡିଯୁକ୍ତ । ବିଛାର ଉଦରଟି ମୋଟ ବାର ଭାଗରେ ବିଭକ୍ତ । ଉଦରର ସମ୍ମୁଖ ଭାଗଟି ଚଉଡା ଓ ପଶ୍ଚାତ ଭାଗଟି ସରୁ ହୋଇଥାଏ । ଉଦରଠାରୁ ଲମ୍ବିଯାଇଥିବା ଅଂଶଟି ହେଉଛି ଲାଞ୍ଜ । ବିଛାର ଲାଞ୍ଜଟି ସବୁଠାରୁ ଭୟଙ୍କର । ଏହି ଲାଞ୍ଜର ଶେଷ ଅଂଶରେ ଏକ ନାହୁଡ ଥାଏ । ବିଛା ଲାଞ୍ଜକୁ ଉପରକୁ କରି ଗତିକରେ । ନାହୁଡଟି ବିଛାର ସବୁଠାରୁ ବିଷାକ୍ତ ଅଂଶ । ନାହୁଡ ଯେଉଁ ଅଂଶ ଲାଞ୍ଜରେ ସଂଯୋଗ ହୋଇଛି ସେହିଠାରେ ଦୁଇଟି ବିଷଗ୍ରନ୍ଥି ରହିଛି । ବିଷଗ୍ରନ୍ଥି ଠାରୁ ଦୁଇଟି ବିଷନଳୀ ନାହୁଡ ପର୍ଯ୍ୟନ୍ତି ଖୋଲାଥାଏ । ନାହୁଡର ଅଗ୍ରଭାଗ ବକ୍ର ଓ ଇଂଜେକ୍‌ସନ ଛୁଞ୍ଚିପରି ଫମ୍ପା ମୁନିଆ ହୋଇଥାଏ । ନାହୁଡ ଶୀକାର ଧରିବା ବେଳେ ମଧ୍ୟ କାର୍ଯ୍ୟରେ ଲାଗିଥାଏ । ଶୀକାରଟି ଯଦି ବିଛାଠାରୁ ଶକ୍ତିଶାଳୀ ଓ ବଡ ହୋଇଥାଏ ତେବେ ସେ ଏହି ନାହୁଡରେ ତାକୁ ଦଂଶିଥାଏ । ଦଂଶନ କରିବା ସମୟରେ ନାହୁଡ ମୂଳରେ ଥିବା ସ୍ଫୀତ ଅଂଶରୁ ବିଷଗ୍ରନ୍ଥୀ ସଂକୁଚିତ ହେବା ଫଳରେ ଦୁଇ ବିଷନଳୀ ଦେଇ ଶୀକାର ଦେହକୁ ବିଷଚାଲି ଯାଇଥାଏ । ଏକାଦି କ୍ରମେ ବିଛା ୪/୫ ଥର ଏହି ବିଷଗ୍ରନ୍ଥୀରୁ ବିଷ ବାହାର କରି ପାରେ । ତାପରେ ଏହା ଶେଷ ହୋଇ ଯାଇଥାଏ । କିଛି ଦିନ ଗଲାପରେ ପୁଣି ବିଷଗ୍ରନ୍ଥି ପୂର୍ଣ୍ଣ ହୋଇଯାଇଥାଏ ।

ବିଛାର ଗଣ୍ଡି ସମ୍ମୁଖ ଭାଗରେ ଦୁଇ ପାଖରେ ଦୁଇଟି ଆଖିଥାଏ । ଏହା ବ୍ୟତୀତ ଗଣ୍ଡର ମଧ୍ୟ ଭାଗରେ ମଧ୍ୟ ଆଉ ଦୁଇଟି କଳା ବିନ୍ଦୁ ଥାଏ, ଏହା ମଧ୍ୟ ଆଖିର କାର୍ଯ୍ୟ କରିଥାଏ । ହେଲେ ଏହି ଆଖିକୁ ଭଲ ଦେଖାଯାଏ ନାହିଁ । ବିଛା ଦେହସାରା ଛୋଟ ଛୋଟ ଶୁଙ୍କ ସଦୃଶ ଲୋମଥାଏ । ଗୋଡ ଓ ଉପାଙ୍ଗ ଦୁଇଟିରେ ଅଧିକ ଲୋମ ଥାଏ । ଏହା

ସ୍ପର୍ଶେନ୍ଦ୍ରୀୟ ଭାବେ କାର୍ଯ୍ୟ କରିଥାଏ । ବିଛା ପେଟ ତଳେ ଆଠଟି ଗଣ୍ଠି ଦୁଇ ଧାଡିରେ ସଜ୍ଜିତ ଥାଏ । ଏହା ସାହାଯ୍ୟରେ ଏମାନେ ନିଃଶ୍ୱାସ ଓ ପ୍ରଶ୍ୱାସ ନେଇଥାନ୍ତି ।

ବିଛାର ବଂଶ ବିସ୍ତାର ପ୍ରକ୍ରୀୟା ଅଦ୍ଭୁତ । ପୁରୁଷ ଓ ସ୍ତ୍ରୀ ବିଛା ମିଳନରେ ମାତ୍ର ବାର ଦିନପରେ ସ୍ତ୍ରୀ ବିଛା ପ୍ରାୟ ତିନିରୁ ନବେ ପର୍ଯ୍ୟନ୍ତ ଛୁଆ ଜନ୍ମ ଦିଏ । ଛୁଆମାନେ ପ୍ରଥମେ ମା ବିଛାର ପିଠି ଉପରେ ଆଶ୍ରୟ ନେଇଥାନ୍ତି । ଛୁଆମାନଙ୍କର ଶରୀର ଉପରିଭାଗ ଟାଣ ହୋଇଗଲାପରେ ମା' ପିଠି ଉପରୁ ଓହ୍ଲାଇ ଥାନ୍ତି । ସ୍ୱାଧୀନ ଭାବେ ଜୀବନ ନିର୍ବାହ କରନ୍ତି । ବର୍ଷେ ବିତିଗଲା ପରେ ଛୁଆ ବିଛା ତାର ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୁଏ । ଏହି ବର୍ଷକ ଭିତରେ ପ୍ରାୟ ୪/୫ ଥର ଛୁଆମାନେ ଦେହରୁ ଖୋଳପା ତ୍ୟାଗ କରିଥାନ୍ତି ।

ସୃଷ୍ଟିର ଏକ ବୈଚିତ୍ର ବିଛାଠାରେ ପରିଲକ୍ଷିତ ହୋଇଥାଏ । ଆଗରୁ କୁହାଯାଇଛି ସ୍ତ୍ରୀ ବିଛା ପୁରୁଷ ବିଛାଠାରୁ ଆକାରରେ ଯଥେଷ୍ଟ ବଡ । ଅନେକ ସମୟରେ ପୁରୁଷ ବିଛା ସହିତ ମିଳନ ପରେ ସ୍ତ୍ରୀ ବିଛା ତାକୁ ନିଜର ଖାଦ୍ୟ କରିଦେଇଥାଏ । ଏପରିକି ମା' ବିଛା ନିଜର ଜନ୍ମିତ ପିଲାମାନଙ୍କୁ ମଧ ଗର୍ଭସ୍ଥ କରିଥିବା ଲକ୍ଷ କରାଯାଇଛି । ବିଛା ମାନଙ୍କର ରାଇଜରେ "ଯୋର ଜାର ମୂଲକ ତାର" ନୀତି ପ୍ରଚଳିତ ।

ବିଛା ମାନଙ୍କର ଆକାର ଓ ପ୍ରକାର ନେଇ ଏମାନଙ୍କର ବାସସ୍ଥାନ ଭିନ୍ନ ଭିନ୍ନ ହୋଇଥାଏ । ବଡ କଳା ବିଛା ଗୁଡିକ ପ୍ରାୟ ଭୂଇଁରେ ଗାତ କରି ଲୁଚି ରହିଥାନ୍ତି । ଲାଲବିଛା ପଥର, ଇଟା ଓ ଅନ୍ୟାନ୍ୟ ପଦାର୍ଥର ସନ୍ଧିରେ ରହିଥାନ୍ତି । ପାମ୍ ବିଛା ବଡ ବଡ ଗଛର ଛାଲି ଓ କୋରଡର ଛପି ରହିଥାନ୍ତି ।

ବିଛାମାନେ ଗରମ ନ ସହି ପାରିଲେ ମଧ ପ୍ରାୟ ବିଷୁବ ମଣ୍ଡଳୀୟ ଅଞ୍ଚଳରେ ରହିଥାନ୍ତି । ଆର୍ଦ୍ରଜାଗା, ପାଣି ମାଠିଆର ତଳେ, ଖଟ ଫାଙ୍କ ଓ ଅନ୍ୟାନ୍ୟ ଜାଗାମାନଙ୍କରେ ଏମାନେ ଆଶ୍ରୟ ନେଇ ଶ୍ରମ ମେଣ୍ଟାଇ ଥାନ୍ତି । ଏମାନେ ରାତ୍ରୀଚର ପ୍ରାଣୀ । ରାତିରେ ଲୁଚିଛପି ବାହାରକୁ ବାହାରି ଖାଦ୍ୟ ଖୋଜିଥାନ୍ତି ଓ ଦିନବେଳେ ବସାରେ ଛପିଥାନ୍ତି, ଶୀକାରକୁ ଦୁଇ ଉପାଙ୍ଗ ସାହାଯ୍ୟରେ ଧରି ଖଣ୍ଡ ଖଣ୍ଡ କରି ଶୀକାର ଦେହର ତରଳ ରସକୁ ଗ୍ରସନୀ ନଳୀ ସାହାଯ୍ୟରେ ଉଦରସ୍ଥ କରିଥାନ୍ତି । ଶୀକାରର ସବୁ କଠିନ ଅଂଶ ଏମାନେ ଖାଇ ପାରନ୍ତି ନାହିଁ । ଶୀକାର ନ ପାଇଲେ ଏମାନେ ମାସ ମାସ ଧରି ବିନା ଖାଦ୍ୟରେ ଭୋକରେ ଅନାୟସରେ ରହି ପାରନ୍ତି ।

ବିଛା କାମୁଡିବା କହିବା ଭୁଲ୍ ହେବ କାରଣ ବିଛା ତାର ନାହୁଡରେ ମାରେ ଏବଂ ସେଥିରୁ ବିଷ ଆମ ଦେହକୁ ଚାଲିଆସେ । ତାପରେ ଅସହ୍ୟ ଯନ୍ତ୍ରଣା ଆମେ ଭୋଗ କରିଥାଏ ।

ବିଛାର ବିଷରେ ହିଷ୍ଟାମିନ୍ ବା ହାଇଡ୍ରୋକ୍ସିଟ୍ରିପ୍ଟାମିନ୍ ଓ ଅନ୍ୟାନ୍ୟ କ୍ଷତିକାରକ ରାସାୟନିକ ପଦାର୍ଥ ଥାଏ । ଔଷଧ ତିଆରି ପାଇଁ ଏହି ବିଛା ବିଷର ଦରକାରରେ ଆସିଥାଏ । ଏଥିପାଇଁ ବିଛାମାନଙ୍କୁ ପଦାରୁ ଧରିଆଣି ବିଛା ପାଳନ ଫାର୍ମ କରାଯାଇ ରଖାଯାଇଛି । ଏମାନଙ୍କ ନାହୁଡକୁ ଚିମୁଟାରେ ଧରି ଇଲେକ୍ଟ୍ରିକ୍ କରେଣ୍ଟ ଲଗାଯାଇ ଏମାନଙ୍କ ବିଷଗ୍ରନ୍ଥିରୁ ବିଷ ସଂଗ୍ରହ କରାଯାଇ କାଚପାତ୍ର ମାନଙ୍କରେ ରଖାଯାଇଥାଏ । ପରେ ଔଷଧରେ ବ୍ୟବହାର କରାଯାଏ ।



# ବୁଢିଆଣୀ (SPIDER)

ଆମ ଦେଶରେ ବୁଢିଆଣୀ ପ୍ରାୟ ସବୁ ଜାଗାରେ ଦେଖାଯାନ୍ତି । ଜୀବ ଜଗତରେ ବୁଢିଆଣୀ ମାନଙ୍କର ଜୀବନ କାହାଣୀ କୌତୁହଳ ପ୍ରଦ । ଏମାନେ ଗଛର ଡାଳକୁ ଡାଳ ଘରର ଚାଳ, ଆଲମାରୀ ଓ କାନ୍ଥ ଫାଙ୍କ, ଖଟ ଓ ଟେବୁଲ୍ ତଳେ ଏପରିକି ଶଶ୍ୟ କ୍ଷେତ୍ରରେ ଧାନ ବିଲରେ ମଧ୍ୟ ସାମୟିକ ସମୟ ବାସ କରୁଥିବାର ଦେଖିବାକୁ ମିଳେ । ଏମାନେ ଜଳ ଓ ସ୍ଥଳରେ ବାସ କରିପାରନ୍ତି । ପବନ ସାହାଯ୍ୟରେ ଆକାଶରେ ମଧ୍ୟ ଉଡି ପାରନ୍ତି ।



(ବୁଢିଆଣୀ)

ପୁରୁଷ ଓ ସ୍ତ୍ରୀ ଏହିପରି ଦୁଇ ଜାତିର ବୁଢିଆଣୀ ଥାନ୍ତି । ପୁରୁଷ ବୁଢିଆଣୀ, ସ୍ତ୍ରୀ ବୁଢୀଆଣୀ ଅପେକ୍ଷା ଆକାରରେ ଛୋଟ । ପୁରୁଷ ବୁଢିଆଣୀ ପ୍ରାୟ ମାଟିଆ ରଙ୍ଗର । ସ୍ତ୍ରୀ ବୁଢିଆଣୀର ପେଟରେ ଅଣ୍ଡା ଥିବାରୁ ଏହା ମୋଟା ଦେଖାଯାଏ । ସ୍ତ୍ରୀ ବୁଢିଆଣୀର ରଙ୍ଗ କଳା । ଏମାନେ ବଂଶ ବିସ୍ତାର କରିବା ପାଇଁ ଅଣ୍ଡା ଦେବାବେଳେ ମାଟିତଳେ ସୁଡଙ୍ଗ କରି ଜାଲ ବିଛାଇ ରହିଥାନ୍ତି । ନିଜେ ଶୀକାର କରି ନିଜର ଖାଦ୍ୟ ସଂଗ୍ରହ କରିଥାନ୍ତି । ପରିବାରରେ ପୁରୁଷ ବୁଢିଆଣୀ ସବୁଠାରୁ ସୁନ୍ଦର ଅଟନ୍ତି ।




(ବୁଢିଆଣୀର ଅଙ୍ଗପ୍ରତ୍ୟଙ୍ଗ)

ବୁଢିଆଣୀ ମାନେ ଖୁବ୍ ଜୋରରେ ଦୌଡି ପାରନ୍ତି । ଏମାନଙ୍କର ଗଣ୍ଠିଯୁକ୍ତ ଗୋଡ ଖୁବ୍ ଚଞ୍ଚଳ । ଗୋଡ ଗୁଡିକ ଶରୀର ତୁଳନାରେ ଲମ୍ୱା । ବୁଢିଆଣୀର ମୋଟ ଆଠଟି ଗୋଡ ଥାଏ । ବୁଢିଆଣୀର ସମ୍ମୁଖ ଭାଗରେ ଦୁଇଟି ଶୁଣ୍ଢ ଥାଏ । ତାହା ବିଷ ଗ୍ରନ୍ଥି ସହିତ ସଂଯୁକ୍ତ ଥାଏ । ଶୀକାର କରିବାରେ ସେ ଏହି ଶୁଣ୍ଢ ଓ ପାଟିର ସାହାଯ୍ୟ ନେଇଥାଏ ।

ପୃଥିବୀର ବିଭିନ୍ନ ଅଞ୍ଚଳରେ ୩୦ ହଜାରରୁ ଅଧିକ ଶ୍ରେଣୀର ବୁଢିଆଣୀ ଦେଖାଯାନ୍ତି । ୫ ମିଲିମିଟରରୁ ୯ ସେଣ୍ଟିମିଟର ଯାଏଁ ବୁଢିଆଣୀର ଶରୀର ବଢିଥାଏ । ବୁଢିଆଣୀ ମାନେ ପାଟିରୁ ଏକପ୍ରକାର ଲାଳ ବାହାର କରି ଜାଲ ବୁଣିଥାଆନ୍ତି । ଶୀକାର ସେହି ଜାଲରେ ଥରେ ପଡିଲେ ଆଉ ସହଜରେ ଚାଲିଯାଇ ପାରେନାହିଁ । ଜାଲରେ ଶୀକାର ପଡିଲା ମାତ୍ରେ ଜାଲ ଦୋହଲି ଉଠେ । ବୁଢିଆଣୀ ଖୁବ୍ ଯୋର୍‌ରେ ଶୀକାର ପାଖକୁ ଦୌଡିଯାଇ ଶୀକାର କରିଥାଏ ।

ବଂଶ ବିସ୍ତାର ପାଇଁ ଅଣ୍ଡିରା ବୁଢିଆଣୀ ଯାଇ ବୁଢିଆଣୀର ସୁନ୍ଦର ଭାବେ ବୁଣିଥିବା ଜାଲ ନିକଟକୁ ଆସିଥାଏ । ଜାଲ ଉପରକୁ ଚଢିଆସି ଦୋହଲାଇ ଦିଏ । ଫଳରେ ମାଈ ବୁଢିଆଣୀ  ପୁରୁଷ ବୁଢିଆଣୀ ପାଖକୁ ଆସେ ଓ ଉଭୟଙ୍କର ମିଳନ ହୋଇଥାଏ । ତାପରେ ମାଈ ବୁଢିଆଣୀ ଏକା ଥରକେ ପ୍ରାୟ ତିନିହଜାର ପର୍ଯ୍ୟନ୍ତ ଅଣ୍ଡା ଦେଇଥାଏ । କିଛି ଦିନପରେ ଅଣ୍ଡା ଗୁଡିକରୁ ଛୁଆ ଫୁଟିଥାଏ । ଛୁଆ ଗୁଡିକୁ ମା' ବୁଢିଆଣୀ ପ୍ରାୟ ତିନିଦିନ ପର୍ଯ୍ୟନ୍ତ ପିଠିରେ ଲାଳନ ପାଳନ କରିଥାଏ । ଛୁଆ ଗୁଡିକ ଶୀକାର କରି ଶିଖିବାପରେ ସ୍ୱାଧୀନ ଭାବେ ଅଲଗା ଜାଲ ବୁଣି ରହିଥାନ୍ତି । ସାଧାରଣତଃ ବୁଢିଆଣୀମାନେ ୧ବର୍ଷରୁ ୨୦ବର୍ଷ ପର୍ଯ୍ୟନ୍ତ ବଞ୍ଚନ୍ତି ।

ମାଛ ପରି ବୁଢିଆଣୀ ପାଣି ଭିତରେ କିଛି ଦିନ ମଧ୍ୟ ବାସ କରିପାରେ । ପାଟିର ଲାଳ ସାହାଯ୍ୟରେ ସିଲିଣ୍ଡର ଆକାରର ଏକ ଜାଲର ମୁଣାରେ ଅମ୍ଳଜାନ ଭରିକରି ତାର ମୁହଁ ବନ୍ଦ କରିଦିଏ । ତାକୁ ନେଇ ପାଣି ତଳକୁ ଯାଇଥାଏ । କିଛିଦିନ ପରେ ଅମ୍ଳଜାନ ସରିଗଲେ ପାଣି ଉପରକୁ ଆସେ ପୁଣି ଅମ୍ଳଜାନ ଭରିକରି ପାଣି ତଳକୁ ଧାରାବାହିକ ଭାବେ ଯାଇଥାଏ ।

ବୁଢିଆଣୀମାନେ ଶସ୍ୟକ୍ଷେତ୍ର ଓ ଅନ୍ୟାନ୍ୟ ଜାଗାରେ ଜାଲମେଲି ଶୀକାର ଧରିଥାନ୍ତି । ଛୋଟ ଛୋଟ କୀଟମାନଙ୍କୁ ଜାଲରେ ଛନ୍ଦି ଶୀକାର ଧରିଥାଏ । ତାପରେ ଶୀକାରକୁ ଶୁଣ୍ଢରେ ଦଂଶିଥାଏ । ଦଂଶନ ଫଳରେ ଶୀକାର ନିସ୍ତେଜ ହୋଇଥାନ୍ତି ବା ମରିଯାଇଥାଆନ୍ତି । ତାପରେ ତାକୁ ଏମାନେ ଖାଇଥାନ୍ତି ।

ଅଧିକାଂଶ ବୁଢିଆଣୀ ବିଷାକ୍ତ । ବେଳେବେଳେ ଏମାନେ ମଣିଷ ଉପରକୁ ଡେଇଁପଡି ଶୁଣ୍ଢଦ୍ୱାରା ଦଂଶନ କରିଥାଆନ୍ତି । ଦଂଶନ କରିବା ଜାଗା ପୋଡେ, ଫୁଲିଉଠେ ଏବଂ ବିଷ

ଚରିଯିବା ପରେ ଜ୍ୱାଳା ଅତିଶୟ ହୋଇଥାଏ । ଏମାନଙ୍କ ଲମ୍ୱା ଲମ୍ୱା ଗୋଡରୁ ଅସଂଖ୍ୟ ଲୋମ ବାହାରିଥାଏ । ଏଗୁଡିକ ଦେହରେ ଲାଗିଲେ ବିଛୁଆତି ଲାଗିଲାପରି କୁଣ୍ଡେଇ ହୁଏ । ପ୍ରାୟ ଆମ ଦେଶର ଅଧିକାଂଶ ବୁଢିଆଣୀ ମନୁଷ୍ୟର କ୍ଷତିକାରକ ନୁହନ୍ତି । କେବଳ ମାଇ କଳା ବୁଢିଆଣୀ ବିଷାକ୍ତ । ଏହା ମାଟି ତଳେ ଥାଏ ।

ବୁଢିଆଣୀ ମାନଙ୍କର ପାଟିରୁ ବାହାରୁଥିବା ଲାଳ ମନୁଷ୍ୟର ଅଶେଷ ଉପକାରରେ ଆସିଥାଏ । ବୁଢିଆଣୀ ଚଷମା ତିଆରିରେ ବ୍ୟବହୃତ ହୋଇଥାଏ ।



(ବୁଢିଆଣୀ ଜାଲ)



# ଉଈ (WHITE ANT)

କୀଟ ପତଙ୍ଗ ମାନଙ୍କ ମଧ୍ୟରେ ଉଈ ଏକ ଖଳ ପ୍ରକୃତିର କ୍ଷୁଦ୍ରପ୍ରାଣୀ । ଉଈ ଯେ ଆମଜାଣତରେ ଅନେକ କ୍ଷତି କରିଥାଏ ତାହା ସମସ୍ତଙ୍କୁ ଜଣା । ପଥର ଓ ଧାତୁ ଦ୍ରବ୍ୟ ବ୍ୟତିତ ଏମାନେ ଯାହା ପାଆନ୍ତି ତାହା ଖାଇ ଛାରଖାର କରିଦିଅନ୍ତି । ବହିପତ୍ର, କାଠ ଜିନିଷ, ପୋଷାକ ପତ୍ର, ଘରର ଚାଳ ଖାଇ ଯିବା ସହିତ ମାଟି ଘରକୁ ଦୁର୍ବଳ କରିଦିଅନ୍ତି । ସିମେଣ୍ଟ ଘରେ ଉଈଙ୍କର ପ୍ରାଦୁର୍ଭାବ ନାହିଁ କହିଲେ ଚଳେ । ଚାଷ ଜମିରେ ମଧ୍ୟ ଏମାନଙ୍କର ଉତ୍ପାତ କିଛି କମ୍ ନୁହେଁ । ଜୀବନ୍ତ ଆଖୁଗଛ, ନଡିଆଗଛ, ଅନେକ ପନିପରିବା ଗଛର ମୂଳକୁ କାଟି ଖାଇ ଯାଆନ୍ତି । ଫଳରେ ଗଛ ଠିଆ ମରିଯାଏ ।



(ଉଈ)

ପୃଥିବୀରେ ପ୍ରାୟ ଦୁଇହଜାର ବିଭିନ୍ନ ପ୍ରକାରର ଉଇ ଅଛନ୍ତି । ଏମାନେ ପ୍ରାୟ ଗ୍ରୀଷ୍ମପ୍ରଧାନ ଦେଶ ଗୁଡିକରେ ଦେଖାଯାଆନ୍ତି । ଉଇମାନେ ଶୁଖିଲା ଯାଗାରେ ରହିବାକୁ ଭଲ ପାଆନ୍ତି । ଇଂରାଜୀରେ ଏମାନଙ୍କୁ "ହ୍ୱାଇଟ୍ ଆଣ୍ଟ" କୁହାଯାଏ । ସଂସ୍କୃତରେ ଏମାନଙ୍କ ନାମ "ବଲ୍ମୀକ" ।

ଉଇମାନଙ୍କର ଶରୀର ଗଠନ ତିନି ଭାଗରେ ବିଭକ୍ତ । ମସ୍ତକ, ବକ୍ଷ, ଓ ଉଦର । ଶରୀର ଖୁବ୍ କୋମଳ । ମାଟି ଭିତରେ ଦଳବଦ୍ଧ ଭାବେ ବସା ବାନ୍ଧି ରହିଥାନ୍ତି । ଏମାନଙ୍କର ୬ଟି ଗୋଡ ଓ ଦୁଇଟି ଆଖି ଏବଂ ଆଖି ପାଖରେ ଦୁଇଟି ଛୋଟ ଛୋଟ ଶୁଣ୍ଢଥାଏ । ଏହି ଶୁଣ୍ଢ ସାହାଯ୍ୟରେ ଏମାନେ ଶତ୍ରୁ କବଳରୁ ନିଜକୁ ରକ୍ଷା କରିବାର ସୂଚନା ପାଇଥାନ୍ତି । ଉଇମାନେ ଏହି ଶୁଣ୍ଢ ସାହାଯ୍ୟରେ ଏକ ପ୍ରକାର ଲାଳ ବାହାର କରି ମାଟି ସହିତ ମିଶାଇ ଗଛର ଶାଖାପ୍ରଶାଖା ସଦୃଶ ବସା ତିଆରି କରିଥାନ୍ତି । ଏହା କିନ୍ତୁ ସେମାନଙ୍କର ସ୍ଥାୟୀ ବସା ନୁହେଁ । ଏମାନଙ୍କର ସ୍ଥାୟୀ ବସାକୁ ଆମେ ହୁଙ୍କା ବୋଲି କହିଥାଉ । ଏହା ଅନେକ କୋଠରୀ ଯୁକ୍ତ । ଉଇ ହୁଙ୍କା ଖୁବ୍ ଶକ୍ତ ଓ ମଜବୁତ୍ । କୋଠରୀ ଗୁଡିକ ଭିନ୍ନ ଭିନ୍ନ କାର୍ଯ୍ୟରେ ବ୍ୟବହୃତ ହୋଇଥାଏ । ଉଇମାନଙ୍କର ପ୍ରଧାନ ଶତ୍ରୁ ସାପ ଓ ଭାଲୁ । ସାପ ହୁଙ୍କା ଭିତରେ ପଶି ଉଇମାନଙ୍କୁ ଖାଇଥାଏ । ଭାଲୁ ହୁଙ୍କା ଭାଙ୍ଗି ମଧ ଏମାନଙ୍କୁ ଖାଇଥାଏ ।

ଉଇମାନେ ସାମାଜିକ କୀଟ । ଏମାନେ ଦଳବଦ୍ଧ ହୋଇଥାନ୍ତି । ଦଳର ଦଳପତିଙ୍କୁ ପୁରୁଷ ଉଇକୁ ରାଜା ଓ ସ୍ତ୍ରୀ ଉଇକୁ ରାଣୀ ଉଇ କୁହାଯାଇଥାଏ । ସାଧାରଣତଃ ଏମାନେ ବଂଶ ବିସ୍ତାରରେ ସାହାଯ୍ୟ କରିଥାନ୍ତି । ଏମାନଙ୍କ ଦେହର ରଙ୍ଗ ହଳଦିଆ ମିଶା ଧୂସର ବା କଳା । ଏମାନଙ୍କ ଦେହ ତୁଳନାରେ ଏମାନଙ୍କ କାନ୍ଧରେ ଦୁଇଯୋଡା ଡେଣାଥାଏ । ଏମାନେ ବର୍ଷାଦିନେ ହୁଙ୍କାରୁ ବାହାରି ଏହି ଡେଣା ସାହାଯ୍ୟରେ ଉଡି ଉଡି ବଂଶ ବିସ୍ତାର ପାଇଁ ନୂତନ ସ୍ଥାନ ଖୋଜି ବୁଲନ୍ତି । ଏମାନଙ୍କୁ ଆମେ "ଝଡିପୋକ" କହିଥାଉ । ଝଡିପୋକର ଡେଣା ଦୁଇଟି ଝଡି ପଡିଲା ପରେ ପୁରୁଷ ଓ ସ୍ତ୍ରୀ ଉଇ ନୂତନ ବସା ବାନ୍ଧି ବଂଶ ବିସ୍ତାର କରିଥାନ୍ତି ।

ପୁରୁଷ ଉଇମାନଙ୍କ ଠାରୁ ସ୍ତ୍ରୀ ଉଇ ଆକାରରେ ବଡ । ଏମାନଙ୍କ ଗୋଡ ଓ ମୁଖ ଦେହ ତୁଳନାରେ ଛୋଟ । ଉଦର ଖୁବ୍ ବଡ । ଏହା ଅଣ୍ଡାରେ ପରିପୂର୍ଣ୍ଣ ଥାଏ । ମାଇ ଉଇ ବା ରାଣୀ ଉଇ ହୁଙ୍କାର କେନ୍ଦ୍ରସ୍ଥଳରେ ଏକ ନିରାପଦ କୋଠରୀରେ ଥାଏ । ତାର ସେବା

ସୁରକ୍ଷା ପାଇଁ ଦଳେ କର୍ମୀ ଉଈ ଥାନ୍ତି । ବୃହତ ଡେଣାଯୁକ୍ତ ଉଈଙ୍କୁ ବାଦ ଦେଲେ ଛୋଟ ଡେଣାଯୁକ୍ତ ଉଈ ମଧ୍ଯ ପ୍ରତି ଦଳରେ ଥାନ୍ତି । ମୁଖ୍ୟ ରାଜାରାଣୀ ଉଈ ମରିଗଲେ ଏମାନେ ବଂଶବୃଦ୍ଧିରେ ଭାଗ ନିଅନ୍ତି । ଗୋଟିଏ ସ୍ତ୍ରୀ ଉଈ ଏକାଥରକେ ୩୦ ରୁ ୪୦ହଜାର ଯାଏ ଓ ବର୍ଷକୁ ପ୍ରାୟ ଏକ ନିୟୁତ ଅଣ୍ଡା ଦେଇଥାଏ । ସାଧାରଣତଃ ଉଈ ମାନଙ୍କର ଜୀବନକାଳ ୫ ରୁ ୧୫ବର୍ଷ ।

ରାଜା ଓ ରାଣୀ ଉଈଙ୍କୁ ବାଦଦେଲେ ଅନ୍ୟ ଉଈମାନେ ପ୍ରଜନନକ୍ଷମ ନୁହନ୍ତି । ବଂଶବୃଦ୍ଧି କରିବାପାଇଁ ଏମାନେ ଉପଯୁକ୍ତ ହୋଇ ନଥାନ୍ତି । ଏମାନଙ୍କ ରଙ୍ଗ ଈଷତ୍ ହଳଦିଆ ବା ଧଳା । ଏମାନଙ୍କ ମଧ୍ୟରେ କର୍ମୀ ଓ ସୈନିକ ବୋଲି କୁହାଯାଉଥିବା ଦୁଇ ପ୍ରକାର ଉଈ ଥାନ୍ତି । କର୍ମୀମାନଙ୍କର ପକ୍ଷ ନଥାଏ । ଏମାନେ ବସା ତିଆରି କରିବା, ଖାଦ୍ୟ ସଂଗ୍ରହ ଓ ବଣ୍ଟନ କାର୍ଯ୍ୟ କରିବା ସହିତ ରାଣୀ ଉଈର ସେବା ଯତ୍ନ ଓ ଅଣ୍ଡାଗୁଡ଼ିକୁ ଯତ୍ନନେବା କାର୍ଯ୍ୟ ତୁଲାଇ ଥାନ୍ତି । ହୁଙ୍କାରେ ଏକ ପ୍ରକାର କବକ ଜାତୀୟ ଉଦ୍ଭିଦ ବା ଛତୁ ଜନ୍ମିଥାଏ । ସ୍ତ୍ରୀ ଓ ପୁରୁଷ ଉଈମାନେ ଏହାକୁ ଖାଦ୍ୟରୂପେ ବ୍ୟବହାର କରିଥାନ୍ତି ।

ସୈନିକ ଉଈମାନେ ସେମାନଙ୍କର ଛୋଟ ଏବଂ ଖୁବ୍ ଶକ୍ତିଶାଳୀ ଶୁଣ୍ଢ ସାହାଯ୍ୟରେ ଶତ୍ରୁପକ୍ଷର ମୁକାବିଲା କରିଥାନ୍ତି । ଶତ୍ରୁମାନଙ୍କୁ ବସାଭିତରକୁ ଛାଡି ନଥାନ୍ତି । ସୈନିକ ଉଈମାନଙ୍କ ମଧ୍ୟରେ କେତେକ ବୟସ୍କ ସୈନିକ ଉଈ ଥାନ୍ତି । ସେମାନେ ଶତ୍ରୁମାନଙ୍କ ଉପରକୁ ଖୁବ୍ ଯୋର୍‌ରେ ଏକ ପ୍ରକରେ ଅଠାଳିଆ ଲାଳୁଆ ପଦାର୍ଥ ପକାଇଥାନ୍ତି ।

ପାଣିକୁ ଉଈମାନେ ଖୁବ୍ ଭୟ କରିଥାନ୍ତି । ବନ୍ୟା ପ୍ଲାବିତ ଅଞ୍ଚଳରେ ଉଈବଂଶ ସଂପୂର୍ଣ୍ଣ ଧ୍ୱଂସ ପାଇଯାଇଥାଏ । ଏପରି ସ୍ଥାନରେ ବଂଶବୃଦ୍ଧିପାଇଁ ତିନି ଚାରିବର୍ଷ ସମୟ ଲାଗେ ।

ଦଳବଦ୍ଧ ଓ ଶୃଙ୍ଖଳିତ ଜୀବନଯାତ୍ରା କିପରି କରିବାକୁ ହୁଏ ତାହା ଉଈମାନଙ୍କ ଠାରୁ ଶିକ୍ଷା କରିବାର ଅଛି । ଉଈମାନେ ମନୁଷ୍ୟର ଅଧିକ କ୍ଷତି ସାଧନ କରୁଥିବାରୁ ଏମାନେ ଆମର ଶତ୍ରୁ । ଏମାନଙ୍କୁ ବିଭିନ୍ନ ଉପାୟରେ ମରାଯାଇଥାଏ । କିରୋସିନ, ଗ୍ରାମାସିନ ଓ ଆଲକାତରା ବ୍ୟବହାର କରି ଏମାନଙ୍କ କବଳରୁ ଜିନିଷ ପତ୍ର ରକ୍ଷା କରାଯାଇଥାଏ ।

